# ଭୂମିକା ।

ଅମ୍ଭେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଯେ ପ୍ରଥମ ସଂସ୍କ-
ରଣରେ କେବଳ ଅର୍ଥ ଓ ପାଠ୍ୟ ବିଷୟ ମାତ୍ର ଥିଲା । ପଦ୍ୟାଦିଁ କ
ଥିଲା । ମାତ୍ର କ୍ଷୁଦ୍ର ବାଳକମାନଙ୍କ ମୁଖରୁ ପଦ୍ୟ ଶୁଣିବାକୁ ଦ୍ୱିତୀୟ
କର୍ତ୍ତୃପକ୍ଷମାନେ ଅଧିକ ଭଲ ବାସନ୍ତି । ସେହେତୁରୁ ଏ ସଂସ୍କରଣରେ
କେତୁ ନବରଚିତ ପଦ୍ୟ ଓ ଛଅଗୋଟି ପାଠ ସନ୍ନିବେଶିତ କରଅଛୁଁ ;
ଆଉ ଏ ଜିଲ୍ଲାରେ ସକଳ ପାଠ୍ୟପୁସ୍ତକ ବନାନ୍ ଓ ଟୀକାସହ ସଙ୍କଳିତ
ନ ଥିବା ପ୍ରଯୁକ୍ତ ଅଧ୍ୟାପକମାନଙ୍କର ପଠନକାର୍ଯ୍ୟରେ ଅସୁବିଧା
ହେଉଛି । ତହିଁର ସୁଗମ ଲାଗି ଶିକ୍ଷକବର୍ଗଙ୍କ ଅନୁରୋଧକ୍ରମେ ଏଥର
କଠିନ୍ ଶବ୍ଦ ସବୁର ବନାନ୍ ଓ ପାଠ୍ୟବିଷୟର ଟୀକା ଦେଇ-
ଅଛୁଁ, ଯଦ୍ୱାରା ଛାତ୍ରମାନେ ମଧ୍ୟ ପଠନବିଷୟର ଭାବାର୍ଥ, ସ୍ୱ
ବୁଦ୍ଧିବଳରେ କେତେ ବୁଝି ପାରିବେ । ପରନ୍ତୁ "ସ୍ୱପ୍ନର ଗାଈ"
"ଅମ୍ବ ରଜୁ ଯୋଡ଼ାର କଥା" "ବୋମ୍ବାଇ" ବଦଳରେ କ୍ରମେ ଗୋରୁ
ଯୋଡ଼ା ଓ ସମ୍ବଲପୁରର ବିବରଣ ସଂଯୋଜିତ କରିଅଛୁଁ, ଯେହେତୁ
ବୋମ୍ବାଇ ସହର ଏ ଦେଶୀୟ ଛାତ୍ରଙ୍କ ଚକ୍ଷୁଗୋଚର ନ ଥିବାରୁ ଭଲ-
ରୂପେ ବୁଝି ପାରନ୍ତି ନାହିଁ ।

ଅମ୍ଭେ ଉଦାରପ୍ରକୃତରେ ସ୍ୱୀକାର କରୁଅଛୁଁ ଯେ ରେମଣ୍ଡା
ଟ୍ରେନିଂ ସ୍କୁଲ ହେଡ୍‌ପଣ୍ଡିତ ଶ୍ରୀ ପୁରୁଷୋତ୍ତମ କର ମହାଶୟ ଆମ୍ଭଙ୍କୁ
ଏହି ପୁସ୍ତକର ନୂତନ ସଂସ୍କରଣରେ ଅଧିକ ସାହାଯ୍ୟ ଦେଇଅଛନ୍ତି ।

ସମ୍ବଲପୁର
୧୩ । ୫ । ୯୦ ବର୍ଷ

ଶ୍ରୀ ତ୍ରିଲୋଚନ ମିଶ୍ର,
ଡେପୁଟୀ ଇନ୍‌ସପେକ୍ଟର ସ୍କୁଲ୍

## ସୂଚିପତ୍ର ।

# ଦ୍ୱିତୀୟ ପାଠ୍ୟପୁସ୍ତକ ।

## ୧ ପାଠ ।

### ଅର୍ଥ ।

ବିଦ୍ୟାଳୟ—ସ୍କୁଲ୍ । ପରମେଶ୍ୱର—ପ୍ରଭୁ । ମୂର୍ଖ—ମୂଢ଼ ।

ମନ୍ଦ—ଖରାପ । ଶିକ୍ଷକ—ମାଷ୍ଟର । ପଶୁ—ଚତୁଷ୍ପଦ ଜନ୍ତୁ ।

ମୂ ଏକ ସାନ ବାଳକ ଅଟେଁ । ମୁଁ ପ୍ରତିଦିନ ପାଠଶାଳାକୁ ଯାଏଁ । ମୂ ଲେଖାପଢ଼ା ଶିଖିବାକୁ ଇଚ୍ଛା କରେଁ ଓ ବିଦ୍ୟାଳୟକୁ ଯାଏଁ । ମୂ ଡେରି କରି ବିଦ୍ୟାଳୟକୁ ଯାଏ ନାହିଁ । ମନ୍ଦ ବାଳକମାନେ ପାଠଶାଳାକୁ ନ ଯାଇ ଖେଳା କରନ୍ତି; ଅତଏବ ସେମାନେ ମୂର୍ଖ ହୁଅନ୍ତି । ଶିକ୍ଷକଙ୍କୁ ମାନ୍ୟ କରିବା ଆମ୍ଭମାନଙ୍କ ବିହିତ । ତାହା ହେଲେ ଆମ୍ଭେମାନେ ଦଣ୍ଡ ପାଇବା ନାହିଁ । ଯେବେ ଆମ୍ଭେମାନେ ଲେଖା-ପଢ଼ା ନ ଶିଖିବା ତେବେ ଆମ୍ଭେମାନେ ପଶୁତୁଲ୍ୟ ହେବା । ପରମେ-ଶ୍ୱର ଆମ୍ଭମାନଙ୍କୁ ଶିଖିବା ନିମନ୍ତେ ବୁଦ୍ଧି ପ୍ରଦାନ କରିଅଛନ୍ତି । ସେ ପଶୁମାନଙ୍କୁ ବୁଦ୍ଧି ଦେଇ ନାହାନ୍ତି ।

### ବନାନ୍ ।

ବିଦ୍ୟାଳୟ । ପରମେଶ୍ୱର । ପାଠଶାଳା । ପଶୁ । ମୂର୍ଖ । ଦଣ୍ଡ । ଶିକ୍ଷକଙ୍କୁ ।

### ପ୍ରଶ୍ନ ।

୧—କେଉଁପରି ବାଳକ ସ୍କୁଲ୍‌କୁ ନ ଯାଏ ?

୨—ସେମାନେ କେଉଁ କାର୍ଯ୍ୟ କରନ୍ତି ?

୩—ବାଳକମାନେ କାହିଁକି ମୂର୍ଖ ହୁଅନ୍ତି ?

୪—ଭଲ ପିଲାମାନେ କାହାକୁ ମାନ୍ୟ କରିବେ ?

୫—ମାନ୍ୟ କଲେ ସେମାନେ କେଉଁ କଥା ନ ପାଇବେ ?

୬—ପରମେଶ୍ୱର କେଉଁ ମାନଙ୍କୁ ବୁଦ୍ଧି ଦେଇଅଛନ୍ତି ?

୭—କି ନିମନ୍ତେ ସେମାନଙ୍କୁ ବୁଦ୍ଧି ଦେଇଅଛନ୍ତି ?

୮—ମୂର୍ଖ ହେଲେ ବାଳକମାନେ କାହାର ତୁଲ୍ୟ ହେବେ ?

୯—ପରମେଶ୍ୱର କେଉଁ ମାନଙ୍କୁ ବୁଦ୍ଧି ଦେଇ ନାହାନ୍ତି ?

୧୦—ତେବେ ମନୁଷ୍ୟ ଓ ପଶୁ ମଧ୍ୟରେ କି ପ୍ରଭେଦ ଅଛି ?

---

## ୨ ପାଠ ।

### ପଠନ ।

### ଅର୍ଥ ।

ଯତ୍ନ—ଚେଷ୍ଟା । ପରିଶ୍ରମ—ମେହେନତ । ଦୃଢ—କଠିନ ।
ଶୀଘ୍ର—ବେଗ । ଚିରକାଳ—ବହୁଦିନ । ଦରିଦ୍ର—ଗରିବ ।

ଉତ୍ତମରୂପେ ଲେଖାପଢ଼ା ଶିଖିବାକୁ ଆମ୍ଭ ସମସ୍ତଙ୍କର ଯତ୍ନ କରିବା ଉଚିତ । ଆମ୍ଭେମାନେ ମନୋଯୋଗପୂର୍ବକ ପରିଶ୍ରମ ନ କଲେ ଉତ୍ତମ ବିଷୟ ଶିକ୍ଷା କରି ପାରିବା ନାହିଁ । ଯେବେ ଆମ୍ଭେମାନେ ଦୃଢ଼ ପରିଶ୍ରମ କରିବା ତେବେ ଶୀଘ୍ର ଉତ୍ତମରୂପେ ଲେଖାପଢ଼ା କରି ପାରିବା । ଆମ୍ଭେମାନେ ଲେଖାପଢ଼ା ନ ଜାଣିଲେ ଚିରକାଳ ଦରିଦ୍ର ରହିବା । ବିଦ୍ୟାଳୟରେ ପଢୁଥିବା ସମୟରେ ଯେବେ ଆମ୍ଭେମାନେ ଶିଖିବା ତେବେ ଜ୍ଞାନୀ ଓ ସଜ୍ଜନ ହେବା ।

### ବନାନ ।

ମନୋଯୋଗପୂର୍ବକ । ପରିଶ୍ରମ । ଜ୍ଞାନୀ । ଉତ୍ତମରୂପେ । ଶୀଘ୍ର । ସଜ୍ଜନ । ଦରିଦ୍ର ।

### ପ୍ରଶ୍ନ ।

୧—ମନୁଷ୍ୟମାନଙ୍କର କେଉଁ ବିଷୟରେ ଯତ୍ନ କରିବା ଉଚିତ ?

୨—କେଉଁ କଥା କଲେ ମନୁଷ୍ୟମାନେ ଭଲକଥା ଶିଖିପାରନ୍ତି ?

୩—ଶୀଘ୍ର ଲେଖାପଢା ଶିଖିବାକୁ କେଉଁପ୍ରକାର ମେହେନତ ଆବଶ୍ୟକ ?

୪—କେଉଁ ସମୟରେ ଲେଖାପଢ଼ା ଶିଖିଲେ ବାଳକମାନେ ଜ୍ଞାନୀ ହେବେ ?

୫—ଲେଖାପଢ଼ା ନ ଶିଖିଲେ ଆମ୍ଭେମାନେ କେଉଁପରି ଅବସ୍ଥାରେ ରହିବା ?

---

୩ ପାଠ ।



ହସ୍ତୀ ।

ଅର୍ଥ ।

ବୃହତ୍କାୟ—ବଡ଼ଶରୀର । ଚର୍ମ୍ମ—ଛାଲ । ସ୍ତମ୍ଭପରି—ଖମ୍ବପରି । ସ୍ଥୂଳ—ମୋଟା । ଦନ୍ତ—ଦାନ୍ତ । ଶୁଣ୍ଢ—ଥୋଡ଼ପାହାର ।

ହସ୍ତୀ ଗୋଟିଏ ବୃହତ୍କାୟ ଜନ୍ତୁ । କୌଣସି୨ ହସ୍ତୀ ୧୦ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୋଇଥାଏ । ଏହାର ଗୋଡ଼ ସ୍ତମ୍ଭପରି; କାନ ପଙ୍ଖା ପରି; ପାଦ ବୃହତ୍, ଗୋଲ ଓ କୋମଳ । ଚାଲିବା ସମୟରେ ସେ କିଛିମାତ୍ର ଶବ୍ଦ କରେ ନାହିଁ । ଏହାର ଚର୍ମ୍ମ ସ୍ଥୂଳ; ଚକ୍ଷୁ କ୍ଷୁଦ୍ର ଓ ଉଜ୍ଜ୍ୱଳ । ମସ୍ତକ ଭାରୀ ହେବା ହେତୁରୁ ଗଳଦେଶ ଲମ୍ବ ହୋଇ ନାହିଁ । ଏହାର ଦୁଇଗୋଟି ଲମ୍ବ ଦନ୍ତ ଥାଏ । ତାହା ମୁଖକୁ ଗୁହାଁଲେ ଅତିବଡ଼ ଦିଶେ । ଏହାର ନାକ ଅତିଲମ୍ବ, ତାକୁ ଶୁଣ୍ଢ ବୋଲାଯାଏ । ଏହି ଶୁଣ୍ଢ ଏହାର ହସ୍ତସ୍ୱରୂପ । ତହିଁରେ ସେ ସକଳ ପଦାର୍ଥ ଉଠାଇ ପାରେ । ଏ ପାଣି ପିଇବା ସମୟରେ ତହିଁରେ ଜଳପୂର୍ଣ୍ଣ କରି ଆପଣା ମୁଖରେ

ତାଳ ଦିଏ । ଏ ଅପଣା ଶୁଣ୍ଢରେ ଆଘ୍ରାଣ କରେ ଓ ନଶ୍ୱାସ ଛାଡ଼େ । ଏହି ଜନ୍ତୁ ପୋଷ ମାନିଲେ ମନୁଷ୍ୟର ବିଶେଷ କାର୍ଯ୍ୟରେ ଅସଇ ।

ବନାନ୍ ।

ପଙ୍ଖା । ସ୍ଥୂଳ । ଶୁଣ୍ଢ । ବିଶେଷ । ନଶ୍ୱାସ । ପୋଷ । ଜଳପୂର୍ଣ୍ଣ ।

ପ୍ରଶ୍ନ ।

୧—କେଉଁ ଜନ୍ତୁର ଶରୀର ବଡ଼ ଅଛି ?

୨—ସେ କେତେ ଫୁଟ ଡେଙ୍ଗା ଥାଏ ?

୩—ହସ୍ତିର ଗୋଡ଼ କେଉଁପରି ଥାଏ ?

୪—ତାହାର କାନ କେଉଁପରି ?

୫—ଚାଲିବାବେଳେ ହସ୍ତୀ କାହିଁକି ଶବ୍ଦ ନ କରେ ?

୬—ହସ୍ତିର ଚର୍ମ ଓ ଚକ୍ଷୁ କେମନ୍ତ ଦିଶେ ?

୭—ତାହାର ଗଲା କେଉଁ ହେତୁରୁ ଲମ୍ବ ହୋଇ ନାହିଁ ?

୮—ତାହାର ଦନ୍ତ କେତେଗୋଟି ?

୯—ଏହାର ନାକକୁ କଣ ବୋଲାଯାଏ ?

୧୦—ଦେହି ଶୁଣ୍ଢ ମନୁଷ୍ୟର କେଉଁ ଅଙ୍ଗ ସଙ୍ଗରେ ସମାନ ଅଛି ?

୧୧—ଶୁଣ୍ଢରେ ସେ କେଉଁ୨ କାର୍ଯ୍ୟ କରିପାରେ ?

୧୨—କେଉଁ କଥା କଲେ ହସ୍ତୀ ମନୁଷ୍ୟର ବିଶେଷ କାର୍ଯ୍ୟ କରେ ?

---

## ୪ ପାଠ ।

## କଳାବର୍ଣ୍ଣ ପୁରୁଷ ।

ଅର୍ଥ ।

ବସ୍ତ୍ର—ଲୁଗା । ଶରୀର—ଦେହ । ଗୌରବର୍ଣ୍ଣ—ଧୋବବର୍ଣ୍ଣ । କ୍ଲେଶ—ଦୁଃଖ । ନିଜ—ଅପଣା । ଦେହ ଶରୀର ।

ଜଣେ କଳାବର୍ଣ୍ଣ ପୁରୁଷ ବସ୍ତ୍ର ଉଧାର କରି ଅପଣା ଶରୀରରେ ଚୂନ ଲେପୁଥିଲା । ତାହା ଦେଖି କୌଣସି ଲୋକ ତାକୁ ପଚାରିଲା "ଅହେ,

ତୁମ୍ଭେ କାହିଁପାଇଁ ଆପଣା ଦେହରେ ଚୂନ ଲେପନ କରୁଅଛ ?" ସେ ଉତ୍ତର କଲା, "ମୁଁ ଗୌରବର୍ଣ୍ଣ ହେବା ପାଇଁ ଚୂନ ଲେପନ କରୁ-ଅଛି ।" ତାହା ଶୁଣି ସେ କହିଲା, "ଅହେ କୃଷ୍ଣବର୍ଣ୍ଣ ପୁରୁଷ, ତୁମ୍ଭେ ନିଜ ଦେହକୁ ବୃଥା କ୍ଳେଶ ଦିଅ ନା ; କାରଣ ତୁମ୍ଭର ଶରୀର ଚୂନକୁ କଳା କରିପାରେ, ମାତ୍ର ଚୂନ ତୁମ୍ଭର କଳାବର୍ଣ୍ଣକୁ କେବେହେଁ ଘୁଞ୍ଚାଇ ପାରିବ ନାହିଁ ।

ଏହାର ତାତ୍ପର୍ଯ୍ୟ ଏହି—ମନ୍ଦ ଭଲକୁ ମନ୍ଦ କରିପାରେ, ମାତ୍ର ମନ୍ଦକୁ ଭଲ କରିବାର ଶକ୍ତି କାହାରଠାରେ ନାହିଁ ।

ବନାନ୍ ।

ପୁରୁଷ । ଶରୀର । ଗୌରବର୍ଣ୍ଣ । କ୍ଳେଶ । ତ୍ୟାଗ । ଚୂନ ।

ପ୍ରଶ୍ନ ।

୧—ଚୂନ କିଏ ଲଗାଉଥିଲା ?

୨—କାହିଁରେ ଚୂନ ମାଖୁଥିଲା ?

୩—ତାହା କିଏ ଦେଖିଲା ?

୪—ଦେଖିଲା ଲୋକ କେଉଁ କଥା ପଚାରିଲା ?

୫—ତାହାକୁ କଳାବର୍ଣ୍ଣ ପୁରୁଷ କି ଉତ୍ତର ଦେଲା ?

୬—ସେହି ଉତ୍ତର ଶୁଣି ଦେଖିଲା ବ୍ୟକ୍ତି କି ପ୍ରତ୍ୟୁତ୍ତର କଲା ?

୭—ଏପ୍ରକାର ଉତ୍ତର ପ୍ରତ୍ୟୁତ୍ତରରୁ କେଉଁ ତାତ୍ପର୍ଯ୍ୟାର୍ଥ ତୁମ୍ଭେମାନେ ବୁଝି ପାରିଲ ?

---

୫ ପାଠ ।

ଉତ୍ତର, ଦକ୍ଷିଣ, ପୂର୍ବ ଓ ପଶ୍ଚିମ ।

ପ୍ରଥମ ଭାଗ ।

ଅର୍ଥ ।

ଉଜ୍ଜ୍ୱଳ—ଝଲୁଥ । ସୁନ୍ଦର—ମନୋହର । ସର୍ବଦା—ସବୁବେଳେ । ସୁବର୍ଣ୍ଣ—ସୁନା । ଡାହାଣ—ଭୂଜଣ ।

ଶ୍ୟାମ, ଉଠ ଉଜ୍ଜ୍ୱଳ ହେଲା । ଚାଲ ଅମ୍ଭେମାନେ ପ୍ରଭାତରେ ବୁଲିବାକୁ ଯିବା ଅଉ ସୂର୍ଯ୍ୟୋଦୟ ଦେଖିବା । ଦେଖ ଆକାଶ କେମନ୍ତ ସୁନ୍ଦର ଦିଶୁଅଛି । ଏହା ଠିକ ସୁବର୍ଣ୍ଣ ବର୍ଣ୍ଣ ଦିଶୁଅଛି । ବର୍ତ୍ତମାନ ସୂର୍ଯ୍ୟ ଦିଶିବାକୁ ଲାଗିଲେ । ଦେଖ ସେ କେମନ୍ତ ଲାଲ ଦିଶୁଅଛନ୍ତି । ଆକାଶର ଯେଉଁ ଦିଗକୁ ବର୍ତ୍ତମାନ ତୁମ୍ଭେ ଦେଖୁଅଛ ତାହାକୁ ପୂର୍ବଦିଗ ବୋଲାଯାଏ । ସୂର୍ଯ୍ୟ ସର୍ବଦା ପ୍ରଭାତରେ ପୂର୍ବଦିଗରେ ଉଦୟ ହୁଅନ୍ତି । ବର୍ତ୍ତମାନ ତୁମ୍ଭର ଡାହାଣ ଦିଗକୁ ଲେଉଟି ଦେଖ । ଏବେ ତୁମ୍ଭେ ଆକାଶର ଅନ୍ୟ ଦିଗକୁ ଦେଖୁଅଛ । ଏ ଦିଗକୁ ଦକ୍ଷିଣଦିଗ ବୋଲାଯାଏ । ପୁଣି ତୁଳନ ଆଡ଼କୁ ଲେଉଟି ଦେଖ । ଏହି ଦିଗକୁ ପଶ୍ଚିମ ଦିଗ କହନ୍ତି । ଆଉ ଥରେ ତୁମ୍ଭର ଡାହାଣ ଦିଗକୁ ବୁଲି ଦେଖ । ଏ ଦିଗକୁ ଉତ୍ତର ଦିଗ କହନ୍ତି ।

### ବନାନ୍ ।

ସୂର୍ଯ୍ୟ । ବର୍ଣ୍ଣ । ପଶ୍ଚିମ । ଉତ୍ତର । ଦକ୍ଷିଣ । ପୂର୍ବ ।

### ପ୍ରଶ୍ନ ।

୧—ପ୍ରଭାତରେ ବୁଲିବାକୁ ଗଲେ କଣ ଦେଖିବ ?
୨—ସୂର୍ଯ୍ୟର ବର୍ଣ୍ଣ କପରି ଦିଶେ ?
୩—କେଉଁ ଦିଗରେ ସୂର୍ଯ୍ୟ ଉଦୟ ହୁଅନ୍ତି ?
୪—ପୂର୍ବଦିଗ ଜାଣିଲେ ଦକ୍ଷିଣଦିଗ କପରି ଜାଣିବ ?
୫—ଦକ୍ଷିଣଦିଗ ଜାଣିଲେ ପଶ୍ଚିମ କପରି ଜଣାପଡ଼ିବ ?

### ଉପଦେଶ ।

### ପଦ୍ୟ ।

### ଅର୍ଥ ।

ରଜନୀ—ରାତ୍ରି । ଜଳଧି—ଜଳ । ଅନୁରତ—ଅବହିତ ।
ବସନ—କପଡ଼ା । ଲଙ୍ଘିବ—ଅମାନ୍ୟ କରିବ । ଅହିତ—[illegible] ।
ସତ୍ୟବାଦୀ—ସତ୍ୟ କହିବା ଲୋକ । ମାଦକ—ନିଶା ।

ଉଠ ବାଳକ ରଜନୀ ପାହିଲା । କାର୍ଯ୍ୟ କରିବା ସମୟ ହୋଇଲା ।୧
ପଲଙ୍କ ତେଜ ନୂତନ ବସନ । ପିନ୍ଧ ବେଗେ ଦନ୍ତ କର ମାର୍ଜନ ।୨
ଶୁଦ୍ଧସ୍ତବରେ ହସ୍ତେ ପୋଥି ଧର । ବିଦ୍ୟାଳୟକୁ ଯାଇ ପାଠ ପଢ଼ ।୩
ମୂର୍ଖ ବାଳକ ସଙ୍ଗରେ ନ ରହ । ଗୁରୁ ଆଜ୍ଞାରେ ପାଠ ପଢ଼ ତହିଁ ।୪
କଳହ କାହା ସଙ୍ଗେ ନ କରିବ । ଆପଣା ପରି ସବୁଙ୍କୁ ଦେଖିବ ।୫
ପିତା ମାତା ଯେ ଗୁରୁ ଜ୍ୟେଷ୍ଠ ଭ୍ରାତା । ଏମାନେ ଜାଣ ବଡ଼ ରକ୍ଷାକର୍ତ୍ତା ।
ଏହାଙ୍କ ଆଜ୍ଞା କେବେ ନ ଲଙ୍ଘିବ । ଯେବେ ଆପଣା ମଙ୍ଗଳ ଚାହିଁବ ।
ଦିବସେ ନିଦ୍ରା ଅଟଇ ଅନୁଚିତ । ବିଦ୍ୟାପଠନ ଅଟଇ ବିହିତ ।୮
ଅତି ଭୋଜନ ରୋଗର ଆକର । ପ୍ରାଣ ଧାରଣ ଭୋଜନ ବେଭାର ।୯
ବଡ଼ ପାପ ଅଛି ମିଥ୍ୟାକଥାରେ । ସତ୍ୟବାଦି ଏ ମାନ୍ୟ ସବୁଠାରେ ।୧୦
ମାଦକଦ୍ରବ୍ୟ ନ କର ଭକ୍ଷଣ । ଯହିଁ ନାଶ ଧନ, ମାନ, ଚକ୍ଷଣ ।୧୧
ମାନି ଚଳିଲେ ଏହି ଉପଦେଶ । ବାଳକବୃନ୍ଦେ ପାଇବ ସୁଯଶ ।୧୨

———:୦:———

ଦ୍ୱିତୀୟ ସ୍ତବ ।

ଅର୍ଥ ।

ପ୍ରଭାତ—ସକାଳ । ଅଦୃଶ୍ୟ—ଦେଖା ନ ଯିବ । ଅଗୋଚର—ଅଜଣା
ଆକାଶ—ଗଗନ । ସର୍ବଦା—ସବୁବେଳେ । ବିପରୀତ—ଓଲଟା ।

ଯେବେ ତୁମ୍ଭେ ସନ୍ଧ୍ୟାବେଳେ ଏଠାରୁ ଆସି ପଶ୍ଚିମ ଦିଗକୁ ଦେଖିବ ତେବେ ପ୍ରଭାତରେ ଆକାଶ ଯେମନ୍ତ ସୁନ୍ଦର ଦିଶୁଥିଲା, ତେମନ୍ତ ସୁନ୍ଦର ଦିଶିବ । ଅନ୍ତର ମଧ୍ୟ ସୂର୍ଯ୍ୟ ଦୃଷ୍ଟିର ଅଗୋଚର ହୋଉଥିବାର ଦେଖିବ । ସୂର୍ଯ୍ୟ ଯେମନ୍ତ ଅଦୃଶ୍ୟ ହୁଅନ୍ତି ତେମନ୍ତ ଅନ୍ଧକାର ଆରମ୍ଭ ହୁଏ । କାରଣ କି ସୂର୍ଯ୍ୟ ଅସ୍ତ ହେଲେ ଅନ୍ଧକାର ହୁଏ । ସର୍ବଦା ସୂର୍ଯ୍ୟ ପଶ୍ଚିମ ଦିଗରେ ଅସ୍ତ ହୁଅନ୍ତି । ଏହି ପ୍ରକାରେ ଆକାଶର ଚାରି ଗୋଟି ଦିଗ ଅଛି । ତନ୍ମଧ୍ୟରୁ ପୂର୍ବ ଓ ପଶ୍ଚିମ ଦିଗ ପରସ୍ପର ବିପରୀତ ଅଟେ ।

ସର୍ବଦା ସୂର୍ଯ୍ୟ ପୂର୍ବଦିଗରୁ ପଶ୍ଚିମ ଦିଗକୁ ଯାନ୍ତି । ଉତ୍ତର ଓ ଦକ୍ଷିଣ ଠିକ୍ ପରସ୍ପର ବିପରୀତ ।

ବନାନ୍ ।

ସନ୍ଧ୍ୟାବେଳେ । ସୂର୍ଯ୍ୟ । ପଶ୍ଚିମ । ବିପରୀତ । ଅଦୃଶ୍ୟ । ଅସ୍ତ । ସୁନ୍ଦର ।

ପ୍ରଶ୍ନ ।

୧—କେଉଁ ସମୟରେ ପଶ୍ଚିମ ଦିଗର ବର୍ଣ୍ଣ ସମାନ ଥାଏ ?

୨—ଅନ୍ଧକାର କପରେ ଜାତ ହୁଏ ?

୩—ସୂର୍ଯ୍ୟ କେଉଁ ଅଡ଼େ ଅସ୍ତ ହୁଅନ୍ତି ?

୪—ଦିଗ କେତେଗୋଟି ତନ୍ମଧ୍ୟରୁ କଏ କାହାର ବିପରୀତ ?

---

୬ ପାଠ ।



ଗୋରୁ ।

ଅର୍ଥ ।

ପରମାୟୁ—ଆୟୁଷ । ଗ୍ରମର—ଚୃଉଁର । ସନ୍ତାନ—ଛୁଅ । ପ୍ରସବ—ଜାତ । ଅଧିକ ପରମାଣରେ—ବହୁତରେ । ସୁସ୍ୱାଦୁ—ଉତ୍ତମ ମିଠା । ସୁଗନ୍ଧ—ସୁବାସ । ପୁଷ୍ଟିକର—ବଳକର । ଉପକାରୀ—ଲାଭଦାୟକ । ଉର୍ବରା—ଫଳବତୀ । ବୃକ୍ଷ—ଶ୍ରେଣୀ । ପ୍ରତିକାର—ଉପାୟ ।

ଚତୁଷ୍ପଦ ପଶୁମାନଙ୍କ ମଧ୍ୟରେ ଗୋରୁ ଏକ ଜନ୍ତୁ ଅଟେ । ସେ ଅତି ଉପକାରୀ । ତାହାଙ୍କ ପରମାୟୁ ୨୦ ବର୍ଷ । ସେ ନାନା ବର୍ଣ୍ଣର

ଦେଖାଯାଏ ଯଥା, ଧଳା, କଳା, ଲାଲ୍, ନାଳା, ଚିତ୍ରି । ଏହା ଭିନ୍ନ ଆଉ ନାନାପ୍ରକାର ଗୋରୁ ମଧ୍ୟ ଅଛନ୍ତି । ଅରଣ୍ୟରେ ଯେଉଁ ଗାଈ ରହନ୍ତି, ସେମାନଙ୍କୁ କପିଳା ବା ଚମରୀ ବୋଲାଯାଏ । ତାହାର ପୁଚ୍ଛରେ ଚମର ପ୍ରସ୍ତୁତ ହୁଏ । ତାହା ଆମ୍ଭେମାନେ ଦେବାଳୟ ଓ ରାଜାଙ୍କ ସମ୍ମୁଖରେ ବିଞ୍ଚିବାରେ ବ୍ୟବହାର କରୁଁ । ଗାଈ ଯେଉଁ ସନ୍ତାନ ପ୍ରସବ କରେ ତାହାକୁ ବାଲ୍ୟାବସ୍ଥାରେ ବାଛୁରୀ କହୁଁ । ଅଣ୍ଡିରା ବଡ଼ ହେଲେ ବୃଷ ଏବଂ ଷଣ୍ଢ ବୋଲୁଁ । ତାହାର ଅଣ୍ଡ ଚ୍ଛେଦନ ହେଲେ ସେ ବଳଦ ହୁଏ । ମାଈ ବାଛୁରୀକୁ ଥଜା ବୋଲାଯାଏ । ସେ ପ୍ରସବ କଲେ ଗାଈ ହୁଏ । ଗାଈକୁ ଯେତେ ଅଧିକ ପରିମାଣରେ ସୁସ୍ୱାଦୁ ଘାସ ଓ ଅନ୍ୟାନ୍ୟ ଖାଦ୍ୟ ଦେଇ ଯତ୍ନପୂର୍ବକ ପ୍ରତିପାଳନ କରାଯାଏ ସେ ସେତିକି ଅଧିକ ଦୁଗ୍ଧ ଦିଏ । ଦୁଗ୍ଧରୁ ସର, ଦଧି, ଓ ଛେନା ପ୍ରସ୍ତୁତ ହୁଏ । ଦଧି ଓ ସରରୁ ଲବଣି ପ୍ରସ୍ତୁତ ହୁଅଇ । ଲବଣିରୁ ଘିଅ ଜନ୍ମେ । ଘିଅ ସର୍ବସାଧାରଣଙ୍କ ଶରୀରର ପ୍ରଧାନ ପୁଷ୍ଟିକର ଖାଦ୍ୟ ଅଟେ । ତହିଁରେ ଯୌବନ, ରୁଚି ଓ ପୁଷ୍ଟି-କର ପ୍ରଭୃତି ଉପକାରୀ ଗୁଣ ଥିବାରୁ ସେହି ଘୃତ ସମସ୍ତଙ୍କ ଆଦରଣୀୟ ବସ୍ତୁ ମଧ୍ୟରେ ଗଣ୍ୟ ହୁଏ ।

ଏ ଜିଲ୍ଲାର ଗାଈମାନେ କ୍ଷୁଦ୍ର ଓ ଉତ୍ତମ ଖାଦ୍ୟ ପାଉ ନ ଥିବାରୁ ଅଧିକ ଦୁଗ୍ଧ ଦିଅନ୍ତି ନାହିଁ । ଏ ଜିଲ୍ଲାର ବଳଦମାନେ ଯେପ୍ରକାର ପ୍ରଧାନ ଭାରବାହକ ସେପରି ଷଣ୍ଢ ନୁହନ୍ତି । ତେଣୁ କେହି ଅଧିକ ସଂ-ଖ୍ୟକ ଷଣ୍ଢ ରଖନ୍ତି ନାହିଁ । କେବଳ ଗାଈ ଗର୍ଭିଣୀ କରିବା ଉଦ୍ଦେ-ଶ୍ୟରେ ଗୋଠ ମଧ୍ୟରେ ଆବଶ୍ୟକମତେ ଏକ ବା ଦୁଇଗୋଟି ରଖନ୍ତି ।

କୃଷକମାନେ ଲଙ୍ଗଳାଦି ଦ୍ୱାରା ବଳଦ ଯୋଚି ଭୂମି କର୍ଷଣ କରନ୍ତି, ଆଉ ତାଙ୍କ ପୃଷ୍ଠ ଉପରେ ବେଶୀ ବୋଝର ଲଦନ ଲଦି ବଣିକମାନେ ଦେଶାନ୍ତର ବାଣିଜ୍ୟ କରିବାକୁ ଯାନ୍ତି ଏବଂ ଶକଟରେ ଯୋଚି ଗଲେ ମଧ୍ୟ ତାହା ଦୂରପଥ ଟାଣି ନେବାରେ କୌଣସି ବାଧା କରନ୍ତି

ନାହିଁ । ମାତ୍ର ଏପରି ଭାରବାହକ ଗୋରୁମାନଙ୍କୁ ସୁସ୍ୱାଦୁ ଘାସ ଓ ବୁଟି, ଚଣା, କୋଳଥ ଇତ୍ୟାଦି ପ୍ରକାରର ଦାନା ପେଟପୂର୍ଣ୍ଣ ଖୁଆଇ ଯତ୍ନପୂର୍ବକ ଗୋଶାଳାରେ ରଖିବା ଉଚିତ ।

ଗୋରୁର ମଳ ମୂତ୍ର ଯେଉଁ ଭୂମିରେ ପଡେ ତାହା ଉର୍ବର ହୋଇ ଉଠେ; ଏଣୁ କୃଷକମାନେ ଯତ୍ନପୂର୍ବକ ଆପଣା ଆପଣା କ୍ଷେତ୍ରରେ ବନ୍ଦୁତ ବନ୍ଦୁତ ଗୋଠ ଓ ଖତ ପକାଇବାକୁ ଚାହାନ୍ତି ଏବଂ ଜଙ୍ଗଲ କାଠର ଅଭାବରେ ଗୋରୁଙ୍କ ମଳ ଶୁଖାଇ ଛେଣା ପ୍ରସ୍ତୁତ କରି ତହିଁରେ ରନ୍ଧନାଦି କାର୍ଯ୍ୟ ନିର୍ବାହ କରାଯାଏ । ପୁଣି ଗୋରୁ ମୃତ ହେଲେ ତାହାର ଚର୍ମରେ ନାନାପ୍ରକାର ଦ୍ରବ୍ୟ ପ୍ରସ୍ତୁତ ହୁଏ ଆଉ ତାହା ବହୁମୂଲ୍ୟରେ ବିକ୍ରୟ ହେଉଥିବାରୁ ବିଦେଶୀୟ ବଣିକମାନେ ଏ ଜିଲ୍ଲାରେ ରହି ଚର୍ମ କ୍ରୟ କରିବାର ବାଣିଜ୍ୟ କରୁଅଛନ୍ତି ।

ଏପ୍ରକାର ପଶୁ ରୁଗ୍ଣ ହେଲେ ତହିଁର ସମୁଚିତ ପ୍ରତିକାର କରିବାର ବିହିତ । ମାତ୍ର ତାହା କରା ଯାଉ ନ ଥିବାରୁ ଅଧିକ ପଶୁ ଅସମୟରେ ନଷ୍ଟ ହେଉଅଛନ୍ତି ।

ବନାନ୍ ।

ଜନ୍ତୁ । ଚତୁଷ୍ପଦ । ପଶୁ । ଯୌଗନ୍ଧ । ଉର୍ବର । ଯତ୍ନପୂର୍ବକ । କାର୍ଯ୍ୟ । ନିର୍ବାହ । ପ୍ରସ୍ତୁତ ।

ପ୍ରଶ୍ନ ।

୧—ଗୋରୁ କାହାକୁ କୁହାଯାଏ ? ସେ କେତେ ବର୍ଣ୍ଣ ହୁଅନ୍ତି ? ଆଉ ସେମାନେ କି କି ବର୍ଣ୍ଣର ଦେଖାଯାନ୍ତି ?

୨—ଚମରୀ ଗାଈ କାହାକୁ କହି ? ସେରୂପ ନାମ ହେବାର କାରଣ କି ?

୩—ଚମର କେଉଁ କେଉଁ କାର୍ଯ୍ୟରେ ବ୍ୟବହାର କରାଯାଏ ?

୪—ବାଛୁରୀ କାହାକୁ କହନ୍ତି ? ଓ ସେ କେତେ ପ୍ରକାର ?

୫—ବଛୁ, ଗାଈ, ଷଣ୍ଢ ଓ ବଳଦର ପ୍ରଭେଦ ବୋଲ ?

୬—ଲବଣି ଓ ଘିଅ କାହିଁରୁ ଜାତ ହୁଏ ? ଘୃତରେ କେଉଁ ଗୁଣ ଥାଏ ?

୭—ଷଣ୍ଢ କି କାରଣରୁ ରଖାଯାଏ ? ବଳଦ କେଉଁ କାର୍ଯ୍ୟ କରଇ ?

୮—ଗୋରୁ ମଲେ କେଉଁ କାର୍ଯ୍ୟରେ ଆସଇ ?

୯—ଏ ଜିଲ୍ଲାରେ ଗୋରୁ ଅଧିକ ମରବାର ଦେଖାଯାଏ ତହିଁର କାରଣ କି ?

---

## ୭ ପାଠ ।



## ଗୋପାଳ ।

### ଅର୍ଥ ।

କ୍ଷୁଦ୍ର—ସାନ । ଜ୍ଞାନୀ—ପଣ୍ଡିତ । ଭଦ୍ରଲୋକ—ଭଲମନୁଷ୍ୟ । ଘୋଡ଼ନ—ଅନ୍ଧାର । ଅନୁପସ୍ଥିତ—ଗରହାଜର । ପରିଦର୍ଶକ—ଦେଖିବାଲୋକ । ପୁରସ୍କାର—ବକସିସ୍ । ସନ୍ତୁଷ୍ଟ—ଆନନ୍ଦ ।

ଗୋପାଳ ଗୋଟିଏ କ୍ଷୁଦ୍ର ବାଳକ । ତାହାର ବୟସ କେବଳ ଦଶ

ବର୍ଷ ହେଲେହେଁ ସେ ତୃତୀୟ ଶ୍ରେଣୀରେ ପଢୁଅଛି । ଏ କାରଣରୁ ଯେ ଏତେ ଉତ୍ତମ ଲେଖି ପଢିପାରେ ତାହା ଆମ୍ଭେ ତୁମ୍ଭକୁ କହିଲୁଁ । ସେ କେବେ ପାଠଶାଳାକୁ ଅନୁପସ୍ଥିତ ହୁଏ ନାହିଁ ଓ ଉଛୁର ମଧ କରେ ନାହିଁ । ସେ ଘରକୁ ଆସି ଭୋଜନ କରେ ଏବଂ ଅନ୍ୟାନ୍ୟ ବାଳକଙ୍କ ସହିତରେ ଖେଳା କରେ । ମାତ୍ର ଶୋଇବା ପୂର୍ବରୁ ସେ ଆରଦିନର ପାଠ ଅଭ୍ୟାସ କରେ । ସେ ପଢିବାକୁ ଶ୍ରଦ୍ଧା କରେ ଏବଂ ଉତ୍ତମରୂପେ ଲେଖିପାରେ । ଦିନକରେ କୌଣସି ପରଦର୍ଶକ ପାଠ-ଶାଳାକୁ ଯାଇ ଗୋପାଳଙ୍କୁ ଗୋଟିଏ ପୁରସ୍କାର ଦେଲେ । ତାହା ଦେଖି ତାହାର ମାତା ପିତା କେତେ ସନ୍ତୁଷ୍ଟ ହୋଇଥିବେ । ସେ ନିଶ୍ଚୟ ସଜ୍ଜନ ଓ ଜ୍ଞାନୀ ହେବ । ଅତଏବ ପୃଷ୍ଠାରେ ଦେଖ ଗୋପାଳ ଜଣେ ଅନ୍ୟକୁ ପଢ଼ା ଦେଉଅଛି ।

ବନାନ୍ ।

ସନ୍ତୁଷ୍ଟ । ଜ୍ଞାନୀ । ଶ୍ରଦ୍ଧା । ଅନୁପସ୍ଥିତ । ଶ୍ରେଣୀ ।

ପ୍ରଶ୍ନ ।

୧—ଗୋପାଳ କେଉଁ ଶ୍ରେଣୀରେ ପଢେ ?

୨—ତେତେବେଳକୁ ତାହାର ବୟସ କେତେ ?

୩—ସେ କାହିଁକି ଅଧିକ ଲେଖାପଢା ଜାଣେ ?

୪—ସେ କେଉଁ ସମୟରେ ଖାଏ, ଖେଳେ ଓ ପାଠ ଅଭ୍ୟାସ କରେ?

୫—ଗୋପାଳର ମାତା ପିତା କାହିଁକି ସନ୍ତୁଷ୍ଟ ହେଲେ ?

## ୮ ପାଠ ।

### ସତ୍ୟ ।

**ଅର୍ଥ ।**

ସତ୍ୟ—ସତ । ମିଥ୍ୟା—ମିଛ । ବିଶ୍ୱାସ—ପ୍ରତୀତି ।

ପ୍ରେମ—ଶ୍ରଦ୍ଧା । କ୍ଲେଶ—ଦୁଃଖ । ମନ୍ଦ—ଖରାପ ।

୧ । କେବେହେଁ ସତ୍ୟ କହିବାକୁ ଭୟ କର ନାହିଁ ।

୨ । ଯେ ମିଥ୍ୟା କହେ କେହି ତାକୁ ବିଶ୍ୱାସ କରନ୍ତି ନାହିଁ ।

୩ । କେବେ୨ ସତ୍ୟ କହିବାକୁ କଷ୍ଟ ବୋଧ ହୋଇପାରେ ।

୪ । ପ୍ରଥମେ ତାହା କହିବାକୁ ଦୁଃଖ ବୋଧ ହେବ ।

୫ । ମାତ୍ର ଯେଉଁ ବ୍ୟକ୍ତି ମିଥ୍ୟା କହେ ସେ ଶେଷରେ ନିତାନ୍ତ କ୍ଲେଶ ପାଇବ ।

୬ । ସତ୍ୟର ପ୍ରତି ପ୍ରେମ କର, ସତ୍ୟର ବିଚାର କର, ସତ୍ୟ କହ ଏବଂ ସତ୍ୟ କାର୍ଯ୍ୟ କର ।

୭ । ତେବେ ସମସ୍ତଙ୍କର ବିଶ୍ୱାସଭାଜନ ହେବ ଏବଂ ପରମେଶ୍ୱର ତୁମ୍ଭଙ୍କୁ ପ୍ରେମ କରିବେ ।

୮ । ତୁମ୍ଭେ ଯଦ୍ୟପି ମିଥ୍ୟା କହିବ, ତେବେ କେହି ତୁମ୍ଭଙ୍କୁ ବିଶ୍ୱାସ କରିବେ ନାହିଁ; ସମସ୍ତେ ତୁମ୍ଭଙ୍କୁ ମିଥ୍ୟାବାଦୀ ବୋଲି ତୁଚ୍ଛ ଜ୍ଞାନ କରିବେ ।

**ପ୍ରଶ୍ନ ।**

୧—କଣ କହିବାକୁ ଭୟ କରିବ ନାହିଁ ?

୨—ଲୋକମାନେ କାହାକୁ ବିଶ୍ୱାସ କରନ୍ତି ନାହିଁ ?

୩—ମିଥ୍ୟାବାଦୀ ଶେଷରେ କଣ ପାଇବ ?

୪—କଣ କଲେ ସମସ୍ତେ ତୁମ୍ଭଙ୍କୁ ବିଶ୍ୱାସ କରିବେ ?

୫—ତୁମ୍ଭେ ମିଥ୍ୟା କହିଲେ ଲୋକେ ତୁମ୍ଭଙ୍କୁ କିରୂପ ଜ୍ଞାନ କରିବେ ?

## ୯ ପାଠ ।

## ସତ୍ୟ କଥନ ।

### ଅର୍ଥ ।

ଅହ୍ଲାଦିତ—ଆନନ୍ଦିତ । ଦୃଷ୍ଟାନ୍ତ—ଉଦାହରଣ ।
ଅବଶେଷରେ—ସର୍ବଶେଷରେ । ଉଦ୍ୟାନ—ବଗିଚା ।
ଶ୍ରଦ୍ଧା—ସ୍ନେହ । ସ୍ମରଣ—ମନେ କରିବାର ।

ଦିନକରେ ଗଣପତି ନାମକ ଏକ କ୍ଷୁଦ୍ର ବାଳକକୁ ତାହାର ପିତା ଗୋଟିଏ ସାନ କୁଠାର ଖେଳିବାକୁ ଦେଲେ । ସେ ଅତିଶୟ ଅହ୍ଲାଦିତ ହୋଇ ତାହା ଧରି ଉଦ୍ୟାନକୁ ଗଲା । ସେ ଏଣେ ତେଣେ ଭ୍ରମଣ କରୁଁ କରୁଁ ଯାହା ଯାହା ଦେଖିଲା, ସେ ସବୁରେ କୁଠାର ଚଳାଇବାର ଆରମ୍ଭ କଲା । ଅବଶେଷରେ ସେ ଏକ କ୍ଷୁଦ୍ର ଆମ୍ରବୃକ୍ଷ ନିକଟରେ ପ୍ରବେଶ ହେଲା । ସେ ତହିଁରେ ମଧ୍ୟ କୁଠାର ଚଳାଇବାକୁ ଆରମ୍ଭ କଲା ଏବଂ ଶୀଘ୍ର ତହିଁରେ କେତେକ ଗଭୀର ଆଘାତ କରି ବଗିଚାର ଅନ୍ୟ ଦିଗକୁ ଚାଲିଗଲା । ତାହାର ପିତା ଏହି ଆମ୍ର ବୃକ୍ଷକୁ ଅତିଶୟ ଶ୍ରଦ୍ଧା କରୁଥିଲେ । ମାତ୍ର ଗଣପତି ତାହା ସମ୍ପୂର୍ଣ୍ଣରୂପେ ପାସୋରି ପକାଇଥିଲା । କିଛିକାଳ ଉତ୍ତାରୁ ତାହାର ପିତା ଆମ୍ରବୃକ୍ଷ ଥିବା ସ୍ଥାନ ନିକଟକୁ ଆସିଲେ ଏବଂ ସେହି ଉତ୍ତମ ଆମ୍ରବୃକ୍ଷ ପ୍ରାୟ ନଷ୍ଟ ହୋଇ ଯାଇଥିବା ଦେଖି ବଡ଼ ଦୁଃଖିତ ହେଲେ । ସେ କ୍ରୋଧ କରି ଗଣପତିକୁ ପଚାରିଲେ, "ଗଣପତି ଏହା କିଏ କାଟିଛୁ ?" "ହେ ପିତଃ ! ମୁଁ ଜାଣେ ନାହିଁ" ବୋଲି କି ଗଣପତି ଉତ୍ତର ଦେଲା ? ନାହିଁ । ସେ ଆପଣାର ପିତା ମୁଖକୁ ଚାହିଁ କାନ୍ଦି କାନ୍ଦି କହିଲା, "ହେ ପିତଃ ! ମୁଁ ମିଥ୍ୟା କହି ପାରେ ନାହିଁ । ମୁଁ କାଟିଲି" । ଦେଖ, କେଡ଼େ ସତ୍ୟବାଦୀ ବାଳକ ? ସେ ସତ୍ୟ କହିବାକୁ କିଛି ମାତ୍ର ଭୟ କଲା ନାହିଁ । ଏଣୁକରି ତାହାର ପିତା ତାହାକୁ ଏକାବେଳକେ କ୍ଷମା କରି ଦେଲେ । ବାଳକମାନଙ୍କର ପ୍ରାୟ ଅସତ୍ୟ କହିବାକୁ ମନ

ହୁଏ । ମାତ୍ର ଅସତ୍ୟ କହିବାକୁ ମନ ହେଲେ ପ୍ରତ୍ୟେକ ବାଳକ ଗଣପତିର ଦୃଷ୍ଟାନ୍ତ ସ୍ମରଣ କରିବ ଏବଂ "ମୁଁ ଅସତ୍ୟ କହି ପାରେ ନାହିଁ" ଏହି କଥା କହିବାକୁ ତାହାର ପରି ଚେଷ୍ଟା କରିବ । ଅତଏବ ବାଳକମାନେ କଷ୍ଟ ହେଉନା କାହିଁକି ସତ୍ୟ କହ ।

ବନାନ୍ ।

ଆହ୍ଲାଦ । କ୍ଷୁଦ୍ର । ଦୃଷ୍ଟାନ୍ତ । ସ୍ମରଣ । ସମ୍ପୂର୍ଣ୍ଣ । ବୃକ୍ଷ ।

ପ୍ରଶ୍ନ ।

୧—ଗଣପତିକୁ ତାହାର ପିତା କଣ ଦେଲେ ?

୨—ଗଣପତି କାହିଁରେ କୁଠାର ଚଳାଇବାର ଆରମ୍ଭ କଲା ?

୩—ଗଣପତି କେଉଁ କଥା ପାସୋର ପକାଇଥିଲା ?

୪—ତାହାର ପିତା କଣ ଦେଖି ଦୁଃଖିତ ହେଲେ ?

୫—ସେ ତାହାକୁ କଣ ପଚାରିଲେ ?

୬—ସେ ଗଣପତିକୁ କେଉଁ କାରଣରୁ କ୍ଷମା କରି ଦେଲେ ?

୭—ଗଣପତିର ଦୃଷ୍ଟାନ୍ତ କେତେବେଳେ ସ୍ମରଣ କରିବ ?

---

## ୧୦ ପାଠ ।



ଗୋରକ୍ଷକ ଓ ଚଷାଲୋକେ ।

ଅର୍ଥ ।

ବ୍ୟାଘ୍ର—ବାଘ । କୃଷକ—ଚଷା । ରକ୍ଷୁଆଳ—ରକ୍ଷକ ।

ପରିହାସ—ଥଟ୍ଟା। ପ୍ରତାରଣା—ଠକିବାର। ଛଳ—କପଟ।

କୌଣସି ପଲ୍ଲୀ ମଧ୍ୟରେ ଜଣେ ରଖୁଆଳ ଗୋରୁ ଚରାଉଁ ବାରମ୍ବାର ମିଥ୍ୟା ଚିତ୍କାର କରି କହେ "ହେ ଚଷାମାନେ, ଅମ୍ଭ ଗୋରୁ ମଧ୍ୟରେ ଗୋଟିଏ ବ୍ୟାଘ୍ର ପଶିଅଛି। ତୁମ୍ଭେମାନେ ଆସି ରକ୍ଷା କର।" ଚଷାଲୋକେ ରଖୁଆଳର ଏହି କଥା ଶୁଣି ବାଡ଼ୀ ଓ ଅନ୍ୟାନ୍ୟ ଅସ୍ତ୍ର ନେଇ ବ୍ୟାଘ୍ର ମାରିବାକୁ ଯାନ୍ତି। ମାତ୍ର ବ୍ୟାଘ୍ର ନାହିଁ ରଖୁଆଳ ପ୍ରତାରଣା କରୁଅଛି ଏହା ଦେଖନ୍ତି। ଏରୂପ ରଖୁଆଳର ମିଥ୍ୟା ପରିହାସରେ କୃଷକଲୋକେ ବିରକ୍ତ ହୋଇ ଫେରି ଯାନ୍ତି। ତହିଁ ଉତ୍ତାରେ ଦିନେ ବାସ୍ତବରେ ଗୋଟିଏ ବ୍ୟାଘ୍ର ଗୋଠ ମଧ୍ୟକୁ ଆସିଲା। ଏଥିରେ ଗୋରକ୍ଷକ ପୂର୍ବପରି ଉଚ୍ଚୈଃସ୍ୱରରେ ଚଷାଲୋକଙ୍କୁ ଡାକିବାକୁ ଲାଗିଲା। ମାତ୍ର ସେମାନେ ବିଚାର କଲେ କି ରଖୁଆଳ ଅମ୍ଭମାନଙ୍କୁ ଠକୁଥିବ। ଏହି ହେତୁରୁ ସାହାଯ୍ୟ କରିବା ନିମନ୍ତେ କେହି ତାହା ନିକଟକୁ ନ ଯିବାରୁ ବ୍ୟାଘ୍ର ଅନେକ ଗୋରୁ ନଷ୍ଟ କରି ଶେଷରେ ରଖୁଆଳକୁ ମଧ୍ୟ ବଧ କଲା। ରଖୁଆଳ ମରିବା ସମୟରେ କହିବାକୁ ଲାଗିଲା, "ହାୟ! ହାୟ! ପୂର୍ବରେ ଚଷାଲୋକଙ୍କୁ କାହିଁପାଇଁ ପ୍ରତାରଣା କରିଥିଲି? ଯେତେବେଳେ ମିଥ୍ୟାଛଳରେ ସେମାନଙ୍କୁ ଡାକିଲି, ତେତେବେଳେ ସେମାନେ ଆସିଲେ। ମାତ୍ର ଏବେ ବ୍ୟାଘ୍ର ଅମ୍ଭଙ୍କୁ ବଧ କଲା, ତଥାପି କେହି ଆସି ରକ୍ଷା କଲେ ନାହିଁ।"

ଏହାର ତାତ୍ପର୍ଯ୍ୟ ଏହି—ମିଥ୍ୟାବାଦୀ ଲୋକେ କେତେବେଳେ ସତ୍ୟ କହିଲେହେଁ କେହି ବିଶ୍ୱାସ କରନ୍ତି ନାହିଁ।

ବନାନ।

ଚିତ୍କାର। ବ୍ୟାଘ୍ର। ଅସ୍ତ୍ର। ସାହାଯ୍ୟ। ଗୋରକ୍ଷକ। ଉଚ୍ଚୈଃସ୍ୱରରେ।

ପ୍ରଶ୍ନ।

୧—ରଖୁଆଳ କେଉଁଠାରେ ଗୋରୁ ଚରାଉଥିଲା?

୨—ସେ କାହିଁକି ଚଷାମାନଙ୍କୁ ଗୋଠକୁ ଡାକିଲା?

୩—ଚଷାମାନେ ବାଘ ମାରିବାକୁ କେଉଁ୨ ଅସ୍ତ୍ର ନେଇ ଗଲେ ?

୪—ସେଠାରୁ କାହିଁକି ବିରକ୍ତ ହୋଇ ଫେରି ଆସିଲେ ?

୫—ରଖୁଆଳ ଅଭ୍ୟାସରେ ଅନବଧାନତାରେ କାହିଁକି ଡାକିଲା ?

୬—ସେ ଦିନ ସତ୍ୟରେ କେଉଁ ଜନ୍ତୁ ଆସିଥିଲା ?

୭—ଚଷାମାନେ ସେଠାକୁ ନ ଗଲେ ବା କାହିଁକି ?

୮—ବ୍ୟାଘ୍ର ବଧ କଲା ସମୟରେ ରଖୁଆଳ କେଉଁ୨ କଥା କହିଲା ?

୯—ବାଘ ଓ ରଖୁଆଳଙ୍କ ଗପରୁ କେଉଁ ଉପଦେଶ ପାଇଲ ?

---

୧୧ ପାଠ ।



ଘୋଡା ।

ଅର୍ଥ ।

ଚତୁଷ୍ପଦ—ଚାରିଗୋଡିଆ । ଗ୍ରାମ୍ୟପାଳିତ—ଗ୍ରାମପୋଷା ।
ତୃଣଜୀବୀ—ଯେ ଘାସ ଖାଇ ଜିଏଁ । ମକ୍ଷିକା—ମାଛି ।
କାର୍ଯ୍ୟକାରୀ—ଯାହା କାର୍ଯ୍ୟରେ ଲାଗେ । ଆହାରୀୟ—ଖାଦ୍ୟ ।
ଅଶ୍ୱାରୋହୀ—ଘୋଡାରେ ଚଢିଥିବା ଲୋକ ।
ସଙ୍କୀର୍ଣ୍ଣସ୍ଥାନ—ଅପଦସ୍ଥଳ । ଇତସ୍ତତଃ—ଏଣେ ତେଣେ ।
ସ୍ନେହସୂଚକ—ଆଦରପୂର୍ବକ । କାରଣ—ହେତୁ ।

ଚତୁଷ୍ପଦଜାତୀୟ ଗୋଟିଏ ଜନ୍ତୁର ନାମ ଘୋଡା । ଏହା ଗୋ-

ଟିଏ ଗ୍ରାମ୍ୟପାଳିତ ପଶୁ । ଏହାର ପରମାୟୁ ୨୦ ବର୍ଷ । ଘୋଡ଼ୀ ଗର୍ଭବତୀ ହେବାର ପ୍ରାୟ ମା ୧୨ ସରେ ଗୋଟିଏ ଛୁଆ ପ୍ରସବ କରେ । ଅଶ୍ୱଶିଶୁକୁ ବଛୁଡ଼ା ଏବଂ ମାଈକୁ ବଛୁଡ଼ୀ କହନ୍ତି । ଘୋଡ଼ାର ଅଣ୍ଡ ଛେଦନ ହେଲେ ତାକୁ ଖସି ବୋଲାଯାଏ । ସେମାନେ ନାନା ରଙ୍ଗର ହୁଅନ୍ତି ଯଥା; ନାଲ, କଳା, ଧୋବ, ଏହି ସବୁ ବର୍ଣ୍ଣରେ ମିଶ୍ରିତ ହୋଇ ମଧ୍ୟ ଦେଖାଯାନ୍ତି । ତୃଣଜୀବୀ ଅନ୍ୟାନ୍ୟ ପଶୁମାନଙ୍କ ପରି ଏହାଙ୍କ ମୁଖ ଦନ୍ତ ନୁହେ । ଏମାନଙ୍କର ଦୁଇ ପାଟିରେ ଦନ୍ତ ଥାଏ । ପୁଚ୍ଛ ଓ ସ୍କନ୍ଧରେ ଲମ୍ବ୍ ୨ କେଶ ଥାଏ ତଦ୍ୱାରା ସେମାନେ ମଶା ଓ ମକ୍ଷିକାଦି ନିବାରଣ କରନ୍ତି । ଅରଣ୍ୟରେ ଏକପ୍ରକାର ଘୋଡ଼ା ଅଛନ୍ତି । ସେମାନେ ଗ୍ରାମ୍ୟପାଳିତ ଘୋଡ଼ା ପରି କାର୍ଯ୍ୟକାରୀ ନୁହନ୍ତି । ଘୋଡ଼ାର ସ୍ୱାଭାବିକ ଗୁଣ ତେଜ, ଶ୍ରମସହିଷ୍ଣୁ, ଚତୁର ଏବଂ ସ୍ୱାମି-ଭକ୍ତ । ଘୋଡ଼ାରେ ଚଢ଼ି ଦ୍ରୁତବେଗରେ ଧାବମାନ କରାଇଲେ ଅନ୍ୟାନ୍ୟ ଜୀବ-ଯାନ ଅପେକ୍ଷା ଅଳ୍ପସମୟରେ ଅଧିକ ପଥ ଗମିବାକୁ ହୁଏ ଏବଂ ଯାହାର ବଳରେ ସଙ୍କଟ ସ୍ଥାନମାନଙ୍କରୁ ଉଦ୍ଧାର ହେବାକୁ ହୁଏ । ଏଣୁକରି ଘୋଡ଼ାକୁ ଉତ୍ତମ ଖାଦ୍ୟ ଚଣା, ବ୍ରୀହି, କୋଳଥ ଓ ସୁସ୍ୱାଦୁ ଘାସ ଦେଇ ଯତ୍ନପୂର୍ବକ ପୋଷିବାକୁ ହୁଏ । ପ୍ରତ୍ୟହ ସ୍ୱାମୀ ସ୍ୱୟଂ ଦୁଇଥର ଅଶ୍ୱଶାଳାକୁ ଯାଇ ଏହାକୁ ଅହା-ରୀୟ ଘାସ ଦେଇ ପୁଚ୍ଛର ନ୍ୟାୟ ସ୍ନେହସୂଚକ ବାକ୍ୟ କହିବା ଉଚିତ । ଯେଉଁମାନେ ଏପ୍ରକାର ଲାଳନ ପାଳନ କରନ୍ତି ସେମାନଙ୍କୁ ଘୋଡ଼ା-ମାନେ ଶାଳ ମଧ୍ୟରେ ଥାଇ ଦେଖିଲେ ଆପଣା ସ୍ୱାମୀ ତହିଁ ଖାଇ-ବାକୁ ଦିଅ ଏହି କଥା କହିବା ଛଳରେ ହିଁନହିଁନାଇ ଆଗ ଦୁଇ ଗୋଡ଼ର ଖୁରା ଭୂମିରେ ମାରନ୍ତି ।

ସାଧାରଣତଃ ଅଶ୍ୱମାନଙ୍କୁ ନାନାପ୍ରକାର ଚାଲି ଶିକ୍ଷା ଦେବା ଉଚିତ । ଶିକ୍ଷିତ ଘୋଡ଼ାରେ ଆରୋହଣ କଲେ ସେ ଅଶ୍ୱାରୋହିକୁ କୌଣସି ଆପଦରେ ପକାଇବ ନାହିଁ । କାରଣ ସେ ଲଗାମ ତଣ୍ଡ

ଇବାର ସବୁ ମର୍ମ ଜାଣିଥାଏ, ଏଣୁ ଇତସ୍ତତଃ ସେ ବ୍ୟକ୍ତିକୁ ବୋହି ପଳାଇ ଯାଏ ନାହିଁ । ଘୋଡାମାନେ କ୍ରୁଦ୍ଧ ହେଲେ ପଛ ଦୁଇ ଗୋଡରେ ଲାତ ମାରନ୍ତି ପୁଣି ଦନ୍ତରେ ଚୋବନ୍ତି । ସେମାନେ ଅଧିକ ଉଜନର ବୋଝ ମଧ୍ୟ ବୁହନ୍ତି ଓ ଗାଡ଼ୀ ଟାଣିବାର ଶିକ୍ଷା ଦେଲେ ତାହା ଟାଣିବାରେ କୌଣସି କଷ୍ଟ ବୋଧ କରନ୍ତି ନାହିଁ ।

ବନାନ୍ ।

ଚତୁଷ୍ପଦ । ସ୍କନ୍ଧରେ । ଶ୍ରମସହିଷ୍ଣୁ । ହ୍ରେଷି । କ୍ରୁଦ୍ଧ । ଅଶ୍ୱାରୋହୀ !

ପ୍ରଶ୍ନ ।

୧—ଘୋଡା କାହାକୁ ବୋଲାଯାଏ ? ସେ କେଉଁଠାରେ ଜାତ ହୁଏ ? ଓ ତାହାର ପରମାୟୁ କେତେ ?

୨—ଘୋଡୀର ଗର୍ଭ ହେବା କେତେ ଦିନ ପରେ ପ୍ରସବ କରେ ? ବଛଡ଼ୀ ବଛଡା କାହାକୁ ବୋଲନ୍ତି ? ଘୋଡା କେତେ୨ ବର୍ଣ୍ଣର ଦେଖାଯାଏ ?

୩—ସେମାନେ ମଶା ଅଦି କାହିଁରେ ବାରଣ କରନ୍ତି ?

୪—କେଉଁ ଜାତିର ଘୋଡା ଭଲ ଓ ସେମାନେ କେଉଁଠାରେ ଥାନ୍ତି ?

୫—ଘୋଡାମାନଙ୍କର କେଉଁ ୨ ଗୁଣ ଥାଏ ଅଉ ତାଙ୍କୁ କେଉଁ ଖାଦ୍ୟ ଦେବା ବିହିତ ?

୬—ଘୋଡ଼ା କେଉଁମାନଙ୍କୁ ଦେଖିଲେ ଭୂଇଁରେ ଠାପୁ ମାରନ୍ତି ?

୭—କେଉଁ କଥା ବାହାନାରେ ଆଗ ଠାପୁ ଉଠାନ୍ତି ?

୮—ଘୋଡ଼ାଙ୍କୁ କେଉଁ ବିଷୟ ଶିକ୍ଷା ଦେବାର କର୍ତ୍ତବ୍ୟ ଅଟେ ଓ ତହିଁର ଶିକ୍ଷାରୁ ଲାଭ କି ?

୯—କି ହେତୁରୁ ଘୋଡ଼ା ଲାତ ମାରନ୍ତି ଓ ଚୋବନ୍ତି ?

୧୦—ଘୋଡ଼ାମାନେ କେଉଁ୨ କାର୍ଯ୍ୟ କରନ୍ତି ?

## ୧୨ ପାଠ ।

## ବର୍ଷା ।

### ଅର୍ଥ ।

କଳାବର୍ଣ୍ଣ—କଳାରଙ୍ଗ । ଆକାଶ—ଶୂନ୍ୟ ।

କିୟଦଂଶ—କିଛିଭାଗ । ଅଦ୍ୟାପି—ଆଜିପର୍ଯ୍ୟନ୍ତ ।

ଜଳବିନ୍ଦୁ—ପାଣିବୁନ୍ଦା । ଆଶ୍ରୟ—ଆଶ୍ରା ।

ମେଘରୁ ବର୍ଷା ହୁଏ । ଦେଖ, ଆକାଶରେ ବର୍ତ୍ତମାନ କଳାବର୍ଣ୍ଣ ମେଘ ଦିଶୁଅଛି ଆଉ ସେ ସବୁ ଉପରେ ଶୀଘ୍ର ଚଳୁଅଛି । ଦେଖ ତହିଁରେ ସୂର୍ଯ୍ୟ ଲୁଚି ଯାଉଅଛନ୍ତି । ତୁମ୍ଭର ମୁଖରେ କୌଣସି ବସ୍ତ୍ର ଢାଙ୍କିଲେ ଯେପରି ତୁମ୍ଭର ମୁଖ ଦିଶଇ ନାହିଁ; ସେପରି ସୂର୍ଯ୍ୟ ତହିଁରେ ଲୁଚି ଯାଇଅଛନ୍ତି । ମାତ୍ର ନୀଳବର୍ଣ୍ଣ ଆକାଶର କିୟଦଂଶ ଅଦ୍ୟାପି ଦିଶୁଅଛି । ଏବେ ନୀଳବର୍ଣ୍ଣ ଆକାଶ କିଛିମାତ୍ର ଦିଶୁ ନାହିଁ । ତାହା ମେଘରେ ଢଙ୍କା ହୋଇ ଯାଇଅଛି । ଏବେ ଚଉଦି ପଟ ଘୋର ଅନ୍ଧାର ଦିଶୁଅଛି । ଶୀଘ୍ର ବୃଷ୍ଟି ହେବ । ବର୍ତ୍ତମାନ ବର୍ଷା ଆରମ୍ଭ ହେଲା । ଉପରୁ ବଡ଼ ବଡ଼ ଜଳବିନ୍ଦୁ ପଡ଼ୁଅଛି । କୁଢ଼ିହଂସମାନେ ଅତି ଆନନ୍ଦିତ ହେଉଅଛନ୍ତି । ମାତ୍ର କ୍ଷୁଦ୍ର ପକ୍ଷିମାନେ ଆନନ୍ଦିତ ନ ହୋଇ ବୃକ୍ଷରେ ଆଶ୍ରୟ ନେଉଅଛନ୍ତି । ବର୍ତ୍ତମାନ ବର୍ଷା ଶେଷ ହେଲା । ଏହା ଅଳ୍ପ ବୃଷ୍ଟି ଅଟେ । ଏବେ ପୁଷ୍ପର ସୁବାସ ଚହଟିଲା । ସୂର୍ଯ୍ୟକିରଣ ପ୍ରକାଶ ପାଇବାକୁ ଲାଗିଲା । କ୍ଷୁଦ୍ର ପକ୍ଷିମାନେ ପୁନ-ରପି ଗୀତ ଗାଇବାକୁ ଆରମ୍ଭ କଲେ ।

### ବନାନ୍ ।

କିୟଦଂଶ । ନୀଳବର୍ଣ୍ଣ । ଆକାଶ । ପକ୍ଷିମାନେ । ବର୍ଷା । ଶେଷ । ଆଶ୍ରୟ ।

### ପ୍ରଶ୍ନ ।

୧—ବର୍ଷା କାହିଁରୁ ଜନ୍ମେ ? ତାହା କେଉଁଠାରେ ଦେଖାଯାଏ ? ତହିଁରେ କିଏ ଲୁଚିଯାଏ ?

୨—ସୂର୍ଯ୍ୟ କେଉଁପରି ମେଘରେ ଲୁଚିଯାଏ ତାହାର ଉଦାହରଣ ଦିଅ ?

୩—ଆକାଶର ପ୍ରକୃତ ବର୍ଣ୍ଣ କି ? ଓ କାହିଁକି କଳା ହୁଏ ?

୪—ବର୍ଷାରେ କେଉଁ ପକ୍ଷିମାନେ ଆନନ୍ଦିତ ହୁଅନ୍ତି ?

୫—କେଉଁମାନେ ଅଣ୍ଡା ନେଇ ଲୁଚନ୍ତି ?

---

## ୧୩ ପାଠ ।

## ସମ୍ବଲପୁର ।

### ଅର୍ଥ ।

ଅରଣ୍ୟମୟ—ଜଙ୍ଗଲରେ ପୂର୍ଣ୍ଣ । କୃତ୍ରିମ—କରି ଯାଇଥିବା ।
ଭୂତପୂର୍ବ—ଆଗେ ହୋଇଥିବା । ଅନ୍ତର୍ଗତ—ମଧ୍ୟରେ ଥିବା ।
ବିମୋଚନ—ଛଡାଇବା । ରାଜପୁରୁଷ—ସରକାରୀ ଲୋକେ ।
ସଂସ୍ଥାପନ—ବସାଇବା । ସ୍ୱାଭାବିକ—ପ୍ରାକୃତିକ ।
ଭଗ୍ନାବଶେଷ—ଭାଙ୍ଗିଗଲୁ ବାକି । ଔଷଧାଳୟ—ଡାକ୍ତରଖାନା ।
ପୂର୍ବାପେକ୍ଷା—ଆଗଠାରୁ । ବଣିକ—ବେପାରୀ । ଉତ୍ପନ୍ନ—ଜାତ ।

୧—ସମ୍ବଲପୁର ପ୍ରସିଦ୍ଧ ନଗର ଅଟେ ଆଉ ମହାନଦୀର ଉତ୍ତରତଟରେ ପୂର୍ବପଶ୍ଚିମ ହୋଇ ଅବସ୍ଥିତି କରଅଛି ।

୨—ଆୟତନ—ଦୀର୍ଘରେ ମା ୨ ଇଲ ଓ ପ୍ରସ୍ଥ ପ୍ରାୟ ମା ୧ ଇଲ, ଲୋକସଂଖ୍ୟା ୧୯ ହଜାର ।

୩—ସ୍ଥିତି—ପୂର୍ବରେ ସମ୍ବଲପୁର ଅରଣ୍ୟମୟ ଓ ପାଟଣା ଅନ୍ତର୍ଗତ ଥିଲା । ସେଠା ରାଜାଙ୍କ ଭାଇ ବଳରାମ ଦେଓ ମୃଗୟାର ଅନୁସରଣକ୍ରମେ ଉକ୍ତ ଅରଣ୍ୟରେ ପ୍ରବିଷ୍ଟ ହୋଇ ୧୪୪୫ ସାଲରେ ଜଙ୍ଗଲ କଟାଇ ଏହି ନଗର ସଂସ୍ଥାପନ କଲେ । ତଦନନ୍ତର ତାଙ୍କ ଉତ୍ତରାଧିକାରମାନେ ଚତୁଃପାର୍ଶ୍ୱବର୍ତ୍ତୀ ୧୮ ଗଡ଼ଜାତ ଜୟ କରି ମହାପ୍ରତାପ

ଯାଇ ଥିଲେ। କିନ୍ତୁ ଶେଷ ରାଜା ନାରାୟଣ ସିଂହ ଅପୁତ୍ରିକ ହୋଇ ମରି-
ଯିବାରୁ ୧୮୪୯ ସାଲରେ ସମ୍ବଲପୁର ଇଂରେଜ ସରକାରଙ୍କର ହସ୍ତ-
ଗତ ହେଲା।

୪—ନଗର ବର୍ଣ୍ଣନ—ପୂର୍ବତନ ରାଜାମାନଙ୍କ ସମୟରେ ଏହି
ନଗର ଗଡ଼ବନ୍ଦୀ ହୋଇଥିଲା। ସହରର ଦକ୍ଷିଣଭାଗ ସ୍ୱାଭାବିକ ମହା-
ନଦୀ ଓ ଅନ୍ୟାନ୍ୟ ଦିଗମାନ ଗୋଟି୨ କୃତିମ ନାଳାରେ ବେଷ୍ଟିତ।
ସହସା ଦୁର୍ଗ ମଧ୍ୟକୁ ଶତ୍ରୁ ପ୍ରବେଶ କରି ନ ପାରିବ ଏହି ଭୟ ବିମୋ-
ଚନ ନିମନ୍ତେ ପରିଖାର ବାହାରେ ଘନାବୃତରୂପ ବଂଶ ରୋପଣ
କରା ଯାଇଥିଲା। ତନ୍ମଧ୍ୟରେ ପକ୍କା ରାଜଗୃହ ପ୍ରସ୍ତୁତ ହୋଇଥିଲା।
ବର୍ତ୍ତମାନ ସେହି ସ୍ଥାନକୁ କିଲ୍ଲାଭିତର କହୁଅଛନ୍ତି। ଅଧୁନା ସେହି
ସବୁ ଦୁର୍ଗ ଓ ପକ୍କା ଗୃହର ଭଗ୍ନାବଶେଷ ମାତ୍ର ଥିବାର ଦେଖା ଯାଉ-
ଅଛି। ଇଦାନୀନ୍ତନ ରାଜପୁରୁଷମାନଙ୍କ ପ୍ରଯତ୍ନରୁ ଏନଗରର ଉତ୍ତରୋ-
ତ୍ତର ଶ୍ରୀବୃଦ୍ଧି ସାଧନ ହେଉଥିବାର ଦେଖାଯାଏ; ଯଥା, ସହର ମଧ୍ୟରେ
ପ୍ରଧାନ ଦୁଇଗୋଟି ରାଜମାର୍ଗ ଅଛି। ତାହାର ଉଭୟ ପାର୍ଶ୍ୱରେ ବଣି-
କମାନେ ଦୋକାନ କରି ନାନାପ୍ରକାର ଦ୍ରବ୍ୟାଦି ବିକ୍ରୟ କରନ୍ତି,
ଆଉ ପ୍ରତ୍ୟହ ସୂରଗୋଟି ବଜାର ବସୁଅଛି ଓ ପ୍ରତି ରବିବାରରେ
ଭୂତପୂର୍ବ ଡିପୋଟୀ କମିଶନର ଶ୍ରୀମାନ୍ କମ୍ବର୍ଲିଜ ସାହେବ ବାହାଦୁର
ନିଜ ନାମରେ ଗୋଟିଏ ସୁପ୍ରତିଷ୍ଠ ବଜାର ସଂସ୍ଥାପନ କରି ଯାଇଅଛନ୍ତି।
ସେଠାକୁ ବହୁବିଧ ପଶୁ, ପକ୍ଷୀ, ବସ୍ତ୍ର, ବାସନ ଓ ଖାଦ୍ୟଦ୍ରବ୍ୟାଦି
ବିକ୍ରୟ ହେବାକୁ ଆସଇ।

ପରନ୍ତୁ ମହାନଦୀର ୩,୪ ସ୍ଥାନରେ ପକ୍କାଘାଟ ବନ୍ଧା ଯାଇଅଛି।
ତନ୍ମଧ୍ୟରେ "ଭିକ୍ଟୋରିୟା ଘାଟ" ଅତି ସୁନ୍ଦର। ତାହା ଶ୍ରୀଯୁକ୍ତ ଡିପୋଟୀ
କମିଶନର "ଗୁଡ୍ରିଜ" ସାହେବଙ୍କ ଆନୁକୂଲ୍ୟରେ ପ୍ରସ୍ତୁତ। ତହିଁରେ
ନଗରବାସିମାନେ ସ୍ନାନାଦି କରନ୍ତି। ସେହି ନଦୀର ସ୍ଥାନେ୨ ବଡ଼୨

ଲାଖ୍‌ଟଙ୍କା ଦଶ ହୋଇଥାଏ । ତହିଁରେ ଏଦେଶୀୟ ଉତ୍ପନ୍ନ ଦ୍ରବ୍ୟାଦି ଜଳପଥରେ ଯାଇ କଟକ ପ୍ରଭୃତି ସ୍ଥାନରେ ବିକ୍ରୀ ହୁଏ ।

୫—ଶିକ୍ଷାଦାନ ସମ୍ବନ୍ଧେ ଏଠାରେ ଗୋଟିଏ ମ୍ୟୁନିସିପଲ ବାଳକସ୍କୁଲ, ଏକ ବାଳିକା ସ୍କୁଲ, ଏକ ହିନ୍ଦୀ ସ୍କୁଲ, ଗୋଟିଏ ମିଶନ ସ୍କୁଲ ଏବଂ ଏକ ଇଂରେଜୀ ହାଇସ୍କୁଲ ସଂସ୍ଥାପିତ ଅଛି ।

୬—ସ୍ୱାସ୍ଥ୍ୟ ନ୍ୟାୟ ଓ ସଭ୍ୟତାଦି—ନଗରର ଶାନ୍ତିରକ୍ଷାର୍ଥେ ଗୋଟିଏ ଥାଣ୍ଡି, ଏକ ଷ୍ଟେସନ, ଗୋଟିଏ ପୋଲିସ ଲାଇନ୍ ଏବଂ ଏକ ପୋଲିସ ଔଷଧାଳୟ ଅଛି । ଏତଦ୍‌ଭିନ୍ନ ଏକଦଳ ଦେଶୀୟ ସୈନ୍ୟ ବାସ କରନ୍ତି । ସାଧାରଣ ଲୋକଙ୍କ ଲାଗି ଗୋଟିଏ ଚିକିତ୍ସାଳୟ; ଲେବେଲଫଣ୍ଡ ନାମରେ ଏକ ମନୋହର ଉଦ୍ୟାନ ଆଉ ଏକ ପ୍ରଧାନ ଡାକଘର ବିଦ୍ୟମାନ ଅଛି । ପୁଣି କେତେ ଗୋଟି ଅଦାଲତ ଅଛି । ତହିଁରେ ଶ୍ରୀମାନ୍ ଡିପୋଟୀ କମିଶନର ପ୍ରଭୃତି ଦଶ ଜଣ ବିଚାରପତି ଦୋଷୀ ନିର୍ଦ୍ଦୋଷିଙ୍କ ନ୍ୟାୟାନ୍ୟାୟ ସ୍ଥିର କରୁଥାନ୍ତି । ତହିଁରେ କାରାବାସ ଦଣ୍ଡପ୍ରାପ୍ତ ବ୍ୟକ୍ତିଙ୍କ ଲାଗି ପୃଥକ୍ ଏକ ଜେଲଖାନା ପ୍ରସ୍ତୁତ ଅଛି । ତହିଁରେ ଥିବା କଏଦମାନଙ୍କଦ୍ୱାରା ନାନାପ୍ରକାର କାର୍ପାସବସ୍ତ୍ର, ତୈଳ ଓ ଅନ୍ୟାନ୍ୟ ପ୍ରକାର ଦ୍ରବ୍ୟାଦି ପ୍ରସ୍ତୁତ ହୋଇ ବିକ୍ରୟ ହେଉଥାଏ । ସେଠାରେ ଗୋଟିଏ ଅକ୍ଷର ଛାପିବା ଯନ୍ତ୍ର ଅଛି । ତାହା ପ୍ରସ୍ତରନିର୍ମିତ, ସାଧାରଣତଃ ପୂର୍ବାପେକ୍ଷା ଏନଗରବାସୀ ଲୋକେ ନାନାପ୍ରକାର ବାଣିଜ୍ୟ ଓ ବିଦ୍ୟାଶିକ୍ଷାଦ୍ୱାରା ଉନ୍ନତି ପ୍ରାପ୍ତ ହୋଇ-ଅଛନ୍ତି । ସମ୍ପ୍ରତି ଏଠାକୁ ରେଲର ଏକ ଶାଖା ଆସିଥିବାରୁ ବାଣିଜ୍ୟ ବିଶେଷ ଉନ୍ନତି ହୋଇ ବିଦେଶ ଗମନରେ ବଡ଼ ସୁବିଧା ହୋଇଅଛି ।

ବନାନ୍ ।

ଜଙ୍ଗଲ । ପ୍ରସ୍ତ । କୃତ୍ରିମ । ବର୍ତ୍ତମାନ । ଦୁର୍ଗ । ଉଚ୍ଚୋରୟ । ଗୁଡ୍ରିକ । ବଣ୍ଡ । ବିଦ୍ୟାଶିକ୍ଷା । ଯନ୍ତ୍ର । ଉନ୍ନତିପ୍ରାପ୍ତ ।

## ପ୍ରଶ୍ନ ।

୧—ସମ୍ବଲପୁର କେଉଁ ନଦୀ ତଟରେ ଅଛି ?

୨—ସେହି ନଗରର ଅଧିବାସୀ କେତେ ?

୩—ସମ୍ବଲପୁର ପୂର୍ବେ କେଉଁ ରାଜାଙ୍କର ଥିଲା ?

୪—କେଉଁ ରାଜା କେଉଁ ସମୟରେ ଉକ୍ତ ନଗର ସ୍ଥାପନ କଲେ ?

୫—କାହିଁ ଲାଗି ଓ କେଉଁ ସମୟରେ ଇଂରେଜ ସରକାରଙ୍କ ହସ୍ତଗତ ହେଲା ?

୬—ପୁରୁଣା ରାଜାମାନଙ୍କ ସମୟରେ ଏ ନଗର କି ପ୍ରକାର ଅବସ୍ଥିତ ଥିଲା ?

୭—ଆଜି କାଲି କେଉଁ ହେତୁରୁ ଏ ନଗର ଉନ୍ନତି ପାଉଅଛି ?

୮—ଏଥିରେ କେତେଗୋଟି ବଜାର ବସୁଅଛି ଓ କେତୋଟି ସ୍କୁଲ ଅଛି ?

୯—କେଉଁ ଘାଟ ପ୍ରଧାନ ଓ କାହିଁକି ?

୧୦—ଏ ନଗରରେ କେତେ ବସ୍ତ୍ରପତି, କେତେ ବଣିକ୍ ଓ କେତେ ଡାକଘର ଅଛି ?

୧୧—ବଇଦିମାନେ କେଉଁ ୨ ଦ୍ରବ୍ୟ ପ୍ରସ୍ତୁତ କରନ୍ତି ଅଥବା ଜେଲରେ କେଉଁ ଯନ୍ତ୍ର ଅଛି ?

### ୧୪ଶ ପାଠ ।

### ଛାଗଳ ।



### ଅର୍ଥ ।

ଛାଗଳ—ଛେଳି । ଶକ୍ତ—ଟାଣ ।

ଚଟାଣ—ବଡ଼ ୨ ପଥର । ପିଚ୍ଛଳିବା—ଖସିବାର ।

ଢୁଙ୍ଗୁରୁ—ସାଙ୍କପଙ୍କଟ । ଦୁଗ୍ଧ—ଗୋରସ ।

୧—ଛାଗଳର ଲମ୍ବ ଦାଢ଼ି ଓ ଲମ୍ବ ଶିଙ୍ଗ ଅଛି ।

୨—ତାହାର ଗୋଡ଼ ଶକ୍ତ । ସେ ଉଚ୍ଚ ପର୍ବତ ଉପରକୁ ଚଢ଼ି ପାରେ । ସେଠାକୁ ମେଣ୍ଢା ଏବଂ ଗାଈମାନେ ଯାଇ ପାରନ୍ତି ନାହିଁ ।

୩—ଛାଗଳର ଖୁରା ଏ ପ୍ରକାର ନିର୍ମିତ ହୋଇଅଛି ଯେ, ତାହା ଚଟାଣରେ ପିଚ୍ଛଳି ପଡ଼େ ନାହିଁ ।

୪—କୌଣସି ୨ ଦେଶରେ ଲୋକମାନେ ପଲ ୨ ଛେଳି ରଖନ୍ତି ।

୫—ସେଠାରେ ଢୁଙ୍ଗୁରୁ ଉପରେ ସେମାନେ ଅନେକଦୂର ପର୍ଯ୍ୟନ୍ତ ଚଢ଼ିଥିବାର ଦେଖାଯାନ୍ତି । ସେ ସ୍ଥାନରେ ସେମାନେ କ୍ଷୁଦ୍ର ୨ ଜନ୍ତୁସ୍ୱରୂପ ବୋଧ ହୁଅନ୍ତି ।

୬—ଯେଉଁ ବାଳକମାନେ ଛେଳି ଚରାନ୍ତି । ସେମାନେ ଛେଳି

ସହିତରେ ଏକ ଚଟାଣରୁ ଅନ୍ୟ ଚଟାଣକୁ ଯାନ୍ତି । ସେମାନେ ଛାଗଳ-ମାନଙ୍କ ଗଳାରେ ଘଣ୍ଟୀ ବାନ୍ଧିଥାନ୍ତି । ଯଦି କୌଣସି ଛେଳି ହଜିଯାଏ ତେବେ ସେମାନେ ତାହାକୁ ଘଣ୍ଟୀର ଶବ୍ଦରେ ଶୀଘ୍ର ପ୍ରାପ୍ତ ହୁଅନ୍ତି ।

୭—ଛାଗଳର ମାଂସ କେତେକ୨ ଖାଦ୍ୟରେ ବ୍ୟବହାର କରା-ଯାଏ । ତାହାର ଦୁଗ୍ଧରେ ଖୀରିସା ପ୍ରସ୍ତୁତ ଓ ମହୀ ମଣ୍ଡ ଦେଖି ହୁଅଇ ।

ବନାନ୍ ।

ଛଡ଼ । ଡୁଙ୍ଗୁର । ଘଣ୍ଟୀ । ଶକ୍ତ । ମାଂସ । ପ୍ରାପ୍ତ ।

ପ୍ରଶ୍ନ ।

୧—ଛେଳିର କଣ୨ ଲମ୍ବ ଥାଏ ?

୨—ତାହାର ଗୋଡ଼ କପରି ଥାଏ ?

୩—କେଉଁ ପରି ସ୍ଥାନକୁ ଛେଳିମାନେ ଯାଇ ପାରନ୍ତି ?

୪—ଛେଳିମାନଙ୍କ ଖୁରା କାହିଁକି ପିଚ୍ଛଳ ପଡ଼େ ନାହିଁ ?

୫—କାହିଁପାଇଁ ଛେଳି ଗଳାରେ ଘଣ୍ଟୀ ବନ୍ଧା ଯାଏ ?

୬—ଛେଳିର ମାଂସ କିରୂପେ ବ୍ୟବହାର କରାଯାଏ ?

ଗଦ୍ୟ ।

ପଦ୍ୟ ।

ଅର୍ଥ ।

ନିରନ୍ତର—ସର୍ବଦା । ଅସୀମ—ବହୁତ ।

ଉତ୍ପାଦନ—ଲାଭ । ସମ୍ପଦ—ଧନ ।

ବିଦେଶ—ଅନ୍ୟଦେଶ । ଅନାୟାସେ—ସହଜରେ ।

ସ୍ୱୀକରିବା—ମୈତ୍ରୀ କରିବା । ବିଦ୍ୟାପ୍ରଭାବ—ବିଦ୍ୟାବଳି

ଅଂଶୀ—ଭାଗୀ । ଆମୋଦେ—ସୁଖରେ ।

ସୁମନ୍ତ୍ରୀ—ମନ ଲଗାଇ ।

ନିରନ୍ତରେ କର ସର୍ବେ ବିଦ୍ୟାକୁ ପଠନ ।
ଏଥିରୁ ସମସ୍ତ ଧନ ହୁଏ ଉତପନ୍ନ ।୧।
ଦୃଢ଼ଚିତ୍ତେ ଯେବେ ବିଦ୍ୟା ଉପାର୍ଜ୍ଜନ କରେ ।
ଗଣ୍ୟ ହୁଏ ସେହି ନର ପଣ୍ଡିତ ମଧ୍ୟରେ ।୨।
ଦେଶ ବିଦେଶରେ ପୂଜା ମିଳଇ ଅପାର ।
ଲକ୍ଷ୍ମୀ ନ ଛାଡ଼ନ୍ତି କେବେ ତାହା ନିକଟର ।୩।
ଏ ଧନକୁ ହରି ନ ପାରନ୍ତି ଆଣ କେହି ।
ଅଂଶୀ ନୁହନ୍ତି ଏ ଧନେ ପିତା ପୁତ୍ର ଭାଇ ।୪।
ଧନ, ମାନ, ଯଶ, ଶିକ୍ଷା, ଅସୀମ ସମ୍ପଦ ।
ଅନାୟାସେ ଆସି ନିତ୍ୟ ସେବୁଥାନ୍ତି ପଦ ।୫।
ଅତି ଅମୋଦେ ବିଦ୍ୱାନ ଦିନକୁ କାଟଇ ।
ବିଦ୍ୟା ପ୍ରଭାବରେ ତାର ଦୁଃଖ ଲେଶ ନାହିଁ ।୬।
ଯେଉଁ ବାଳକ ଅଳସେ ବିଦ୍ୟା ନ ପଢ଼ିବ ।
ପଶୁମାନଙ୍କର ପରି ଦିନ ଦୁଃଖେ ନେବ ।୭।
ଗଧ, କୋଚ୍ଚଙ୍କ ସଦୃଶ କନ୍ଧେ ଭାର ବୋହି ।
ଦିନ ନ ଯାଉ ସୁମନେ ବିଦ୍ୟା ପଢ଼ି ଭାଇ ।୮।

## ୧୫ ପାଠ ।

## ଶୃଗାଳ ଓ ଛେଳି ।



### ଅର୍ଥ ।

ଶୃଗାଳ—କୁନ୍ଥିଅ । ଅନ୍ୱେଷଣ—ଖୋଜିବାର ।

ତୃଷା ନିବର୍ତ୍ତ—ଶୋଷ ବନ୍ଦ କରବା ।

ମୁହୂର୍ତ୍ତମାତ୍ରକେ—କ୍ଷଣକ ମଧ୍ୟରେ । ଧୂର୍ତ୍ତ—ଶଠ ।

ସମସ୍ତ ଶୃଗାଳର ଚତୁରତା ବିଷୟ ଶୁଣିଥିଲେ ଏବଂ ଛେଳି ବ୍ୟତୀତ ସମସ୍ତେ ତାହା ବିଶ୍ୱାସ କରିଥିଲେ । ଏକଦା ଗ୍ରୀଷ୍ମକାଳରେ ସମସ୍ତ ଝରଣ ଓ ନଳା ଶୁଷ୍କ ହୋଇଗଲା । ଗୋଟିଏ ଶୃଗାଳ ଦିନଯାକ ଜଳପାନ କରିବାପାଇଁ ଜଳ ଅନ୍ୱେଷଣ କଲା ମାତ୍ର ପାଇଲା ନାହିଁ । ତତ୍ପରେ ସେ ଗୋଟିଏ ଖଳାକୁ ଗୁପ୍ତଭାବରେ ଗଲା, ମାତ୍ର ସେଠାରେ କୁକ୍କୁର ତାକୁ ଦେଖି ପାରିବାରୁ ତ୍ରସ୍ତ ହୋଇ ପଳାଇ ଗଲା । ଅବଶେଷରେ ସନ୍ନିକଟବର୍ତ୍ତୀ କୌଣସି କ୍ଷେତ୍ର ମଧ୍ୟରେ ଗୋଟିଏ ପୁରାତନ କୂପ ଥିବାର ଜାଣି ଅତି ଶୀଘ୍ର ସେଠାରେ ପହୁଞ୍ଚି ଦେଖିଲା ଯେ ସେ ଜଳ ନିକଟକୁ ପହୁଞ୍ଚି ପାରୁ ନାହିଁ । ସେ ପାନ କରି-

ତାକୁ ବାରମ୍ବାର ଚେଷ୍ଟା କଲା , ମାତ୍ର ଜଳ ସ୍ପର୍ଶ କରି ପାରିଲା ନାହିଁ । ଶେଷରେ ତହିଁରେ ପଡ଼ିଯିବାରୁ ତାହାର ପାଦ ଉପରକୁ ହୋଇଗଲା । ସେ ପଡ଼ିବାରେ ବିଶେଷ ଆଘାତ ପାଇଲା ନାହିଁ । କିନ୍ତୁ ଭୟରେ ତ୍ରସ୍ତ ହେଲା । କୂପ ମଧ୍ୟରେ ଗଭୀର ଜଳ ନ ଥିବାରୁ ସେ ଆନନ୍ଦରେ ଜଳପାନ କଲା । ତୃଷା ନିବୃତ୍ତ ହେଲାରୁ ସେ କୂପ ଉପରକୁ ଉଠିବାକୁ ଇଚ୍ଛା କଲା । ମାତ୍ର କୂପର ପାର୍ଶ୍ୱଦେଶ ଉଚ୍ଚ ଥିବାରୁ ପଛ ଗୋଡ଼ରେ ଠିଆ ହେଲେ ମଧ୍ୟ କୂପର ଉପରିଭାଗ ପର୍ଯ୍ୟନ୍ତ ପହୁଞ୍ଚି ପାରିଲା ନାହିଁ । ସେ ବନ୍ଦୀସ୍ୱରୂପ ରହି ଗତାୟତ କରି ପାରିଲା ନାହିଁ । ପରଦିନ ପ୍ରାତଃକାଳରେ ଏକ ଛେଳି ସେଠାକୁ ଆସି ଶୃଗାଳକୁ ଦେଖି କହିଲା "ଜଳ କି ଉତ୍ତମ ଅଛି" ତହିଁରେ ଶୃଗାଳ ଉତ୍ତର କଲା "ହେ ମିତ୍ର, ଭିତରକୁ ଆସ, ଏ ଜଳ ଏତେ ଉତ୍ତମ ଯେ ଅମ୍ଭେ ପାନ କରିବାରୁ ଖାନ୍ତ ହୋଇ ପାରୁ ନାହୁଁ" । ଲମ୍ବଦାଢ଼ି-ବିଶିଷ୍ଟ ଛେଳି ଏକାବେଳକେ ଭିତରକୁ ଡେଇଁ ପଡ଼ିଲା । ଶୃଗାଳ ତତ୍‌କ୍ଷଣାତ୍ ତାହାର ପିଠି ଉପରେ ଚଢ଼ି ମୁହୂର୍ତ୍ତମାତ୍ରକେ ଉପରକୁ ଉଠିଲା ଆଉ ଲେଉଟି ଦେଖି କହିଲା "ହେ ଠାକୁରାଣି, ତୁମ୍ଭଙ୍କୁ ଧନ୍ୟବାଦ ଦେଉଅଛୁଁ ଓ ନମସ୍କାର କରି ଯାଉଅଛୁଁ" । ସେ ନିର୍ବୋଧ ଛେଳି ଧୂର୍ତ୍ତ ଶୃଗାଳ କଥାରେ ବିଶ୍ୱାସ କରି ଆପଣା ମୂର୍ଖତା ପ୍ରକାଶ କରିଥିବା ଶୀଘ୍ର ଜାଣି ପାରିଲା । ଯେଉଁମାନେ ଧୂର୍ତ୍ତ ଏବଂ ସ୍ୱାର୍ଥପର ସେମାନଙ୍କୁ କେବେହେଁ ବିଶ୍ୱାସ କରିବ ନାହିଁ ।

ବନାନ୍ ।

ବିଶ୍ୱାସ । ଶୁଷ୍କ । ଗ୍ରୀଷ୍ମ । ସ୍ପର୍ଶ । ବନ୍ଦୀସ୍ୱରୂପ । ମୁହୂର୍ତ୍ତ ।

ପ୍ରଶ୍ନ ।

୧—ଶୃଗାଳର ଚତୁରତା ବିଷୟ କିଏ ଜାଣି ନ ଥିଲା ?

୨—ଶୃଗାଳ ଗ୍ରୀଷ୍ମକାଳରେ କଣ ପାଇଲା ନାହିଁ ?

୩—କେଉଁଠାରେ ସେ କୁକ୍କୁରକୁ ଦେଖି ପଳାଇଲା ?

୪—କେଉଁଠାରେ ସେ ପାଣି ପାଇଲା ?

୫—କିପାଇଁ ସେ କୂପ ଭିତରୁ ବାହାର ହୋଇପାରିଲା ନାହିଁ ?

୬—ଅନ୍ୟ ଦିନ ପ୍ରଭାତରେ ଛେଳି ଆସି ତାକୁ କି ପ୍ରଶ୍ନ କଲା ?

୭—ଶୃଗାଳ କିପରି ଉତ୍ତର ଦେଲା ?

୮—ତତ୍ପରେ ଛେଳି କଣ ହେଲା ?

୯—ଶୃଗାଳ ଉପରକୁ ଆସି କଣ କହିଲା ?

୧୦—କିପରି ଲୋକଙ୍କୁ ବିଶ୍ୱାସ କରିବାର ଉଚିତ ନୁହେଁ ?

## ୧୭ ପାଠ ।

## ବାଳକର ଉଦ୍ଯୋଗ ।

### ଅର୍ଥ ।

ଉତ୍ସୁକ—ଉଦ୍ୟମୀ । ପୁରସ୍କାର—ବକସିସ ।

ପ୍ରଶଂସା—ଧନ୍ୟବାଦ । ଭଦ୍ରଲୋକ—ଭଲଲୋକ ।

ଆଶ୍ଚର୍ଯ୍ୟ—ଚମତ୍କାର । ଯାବଜ୍ଜୀବନ—ମରଣ ପର୍ଯ୍ୟନ୍ତ ।

୧—କୌଣସି ପାଠଶାଳାରେ କେତେକ ପୁରସ୍କାର ଦେବାକୁ ଥିଲା ଏବଂ ବନ୍ଧୁ ନାମରେ ଜଣେ ବାଳକ ତନ୍ମଧ୍ୟରୁ ଗୋଟିଏ ପାଇବାକୁ ଉତ୍ସୁକ ଥିଲା । ସେ କିନ୍ତୁ ଗରିବ ଥିବା ହେତୁରୁ ତାହାର ସହାଧ୍ୟାୟୀ ବାଳକମାନେ ହସ୍ତଲେଖନ ବ୍ୟତୀତ ଅନ୍ୟାନ୍ୟ ବିଷୟରେ ତାହା ଅପେକ୍ଷା ଉତ୍ତମ ଥିଲେ । ଅତଏବ ସେ ପ୍ରାଣପଣରେ ହସ୍ତଲେଖନ ନିମନ୍ତେ ପୁରସ୍କାର ପାଇବାକୁ ଚେଷ୍ଟା କରିବାକୁ ସଙ୍କଳ୍ପ କଲା ।

୨—ସେ ସାଧ୍ୟମତେ ଚେଷ୍ଟା କଲା । ସେ ଏରୂପ ସାବଧାନପୂର୍ବକ ପ୍ରତ୍ୟେକ ଧାଡ଼ି ଲେଖିଲା ଯେ, କୌଣସି ପୃଷ୍ଠାରେ ଗୋଟିଏ ସୁଦ୍ଧା ଦାଗ ନ ଥିଲା । ତାହା ହସ୍ତଲେଖନ ବହି ଏପ୍ରକାର ଭଲ ହୋଇଥିଲା ଯେ ତାହା ଅପେକ୍ଷା ଦ୍ୱିଗୁଣବୟସ୍କ କୌଣସି ବାଳକ ଲେଖି-

ଥିଲେ ପ୍ରଶଂସା ପାଉଥାନ୍ତା । ପୁରସ୍କାର ବଣ୍ଟନ କରିବା ସମୟ ହେବାରୁ ବଣ୍ଟନକର୍ତ୍ତା ବିଦ୍ୟାଳୟରେ ଉପସ୍ଥିତ ହେଲେ ।

୩—ସେ ଦୁଇଗୋଟି ହସ୍ତଲେଖନ ବହି ହସ୍ତରେ ଧରି କହିଲେ "ଏ ଉଭୟ ମଧ୍ୟରୁ କେଉଁ ଗୋଟି ବିଦ୍ୟାଳୟରେ ସର୍ବାପେକ୍ଷା ଉତ୍ତମ ଏହା କହିବାକୁ ଆମ୍ଭଙ୍କୁ କଠିନ ବୋଧ ହେଉଅଛି । ମାତ୍ର ବିଷ୍ଣୁର ବହିରେ ଗୋଟାଏ ପୃଷ୍ଠା ଅଛି, ତାହା କେବଳ କୃଷ୍ଣର ବହି ଅପେକ୍ଷା ଭଲ ଏମନ୍ତ ନୁହେ । କିନ୍ତୁ ସ୍ୱୟଂ ବିଷ୍ଣୁର ଅନ୍ୟାନ୍ୟ ପୃଷ୍ଠାପେକ୍ଷା ମଧ୍ୟଂ ଭଲ ଅତଏବ ତାହାର ବହି ନିମନ୍ତେ ପୁରସ୍କାର ଦିଆଯିବ ।"

୪—ବିଷ୍ଣୁର ଅନ୍ତଃକରଣ ଆନନ୍ଦରେ ମଗ୍ନ ହେଲା । ମାତ୍ର ତହିଁ ସଙ୍ଗେ କିଞ୍ଚିତ୍ ଭୟ ମଧ୍ୟ ଜାତ ହେଉଥିଲା । ସେ ସେହି ଭଦ୍ରଲୋକ ନିକଟକୁ ଯାଇ କହିଲା, "ମହାଶୟ, ଆଜ୍ଞା କଲେ ମୁଁ ସେହି ପୃଷ୍ଠା ଦେଖନ୍ତି ।"

ଭଦ୍ରଲୋକ କିଞ୍ଚିତ୍ ଆଶ୍ଚର୍ଯ୍ୟ ହୋଇ କହିଲେ "ହଁ ଦେଖ ।"

୫—ବିଷ୍ଣୁ ସେହି ପୃଷ୍ଠା ଦୃଷ୍ଟି କରି ବହିକି ଫେରି ଦେଲା, ଆଉ କହିଲା, "ମହାଶୟ ତାହା ମୋର ଲେଖା ନୁହେ । ଦିନକରେ ଜଣେ ଉଚ୍ଚ ଶ୍ରେଣୀର ବାଳକ ତାହାର ବହି ପରିବର୍ତ୍ତରେ ମୋର ବହି ଭ୍ରମରେ ନେଇ ଲେଖିଅଛି ।"

୬—ବଣ୍ଟନକର୍ତ୍ତା ବିସ୍ମୟଯୁକ୍ତ ହୋଇ କହିଲେ "ତାହାହେଲେ ସବୁ ବିପରୀତ ହେଲା" । ପୁନର୍ବାର ସେହି ପୁସ୍ତକଦ୍ୱୟ ସାବଧାନପୂର୍ବକ ତୁଳନା କରି କୃଷ୍ଣକୁ ପୁରସ୍କାର ଦେଲେ ।

୭—ବାଳକମାନେ ବିଷ୍ଣୁକୁ ହସିଲେ ଆଉ ତନ୍ମଧ୍ୟରୁ ଜଣେ କହିଲା, "ତୁ କେଡ଼େ ମୂର୍ଖ, ଏକଥା କାହିଁକି କହିଲୁ ? ମୁଁ ହେଲେ କହି ନ ଥାନ୍ତି; କାରଣ କି ସେହି ପୃଷ୍ଠା ତୋରି ବହିରେ ଥିଲା ।"

୮—ସେମାନଙ୍କର ସବୁ କଥା ଶୁଣି ବିଷ୍ଣୁ ସ୍ଥିରଭାବରେ କହିଲା "ସେ ପୃଷ୍ଠା କିଏ ଲେଖିଥିଲା, ତାହା ମୁଁ କହି ନ ଥିଲେ ସତ୍ୟକଥା

ପ୍ରକାଶ ହୋଇ ନ ଥାନ୍ତା । ମୁ ବନ୍ଧୁ ପୁରସ୍କାର ପାଇବା ଅପେକ୍ଷା ବରଂ ସତ୍ୟ କହିବି ଓ ଉଚିତାଚରଣ କରିବି ।” ଧନ୍ୟ ବିଷ୍ଣୁ ।

୯—ଯାବଜ୍ଜୀବନ ସେ ଏହି ନିୟମରେ ଚଳି ସମସ୍ତଙ୍କର ପ୍ରିୟପାତ୍ର ଓ ମାନ୍ୟାସ୍ପଦ ହେଲା ।

### ବନାନ ।

ବିଷ୍ଣୁ । ଅପେକ୍ଷା । ପ୍ରଶଂସା । ଅଶ୍ରୀ । ବିମୁଖ । ମାନ୍ୟାସ୍ପଦ ।

### ପ୍ରଶ୍ନ ।

୧—ପୁରସ୍କାର ପାଇବାକୁ କଏ ଉତ୍ସୁକ ଥିଲେ ?

୨—ସେ କେଉଁ ବିଷୟରେ ପାରଗ ଥିଲା ?

୩—ସେ କେଉଁପରି ଆପଣା ବହି ଲେଖିଲା ?

୪—ଶିକ୍ଷାକର୍ତ୍ତା ଦୁଇଗୋଟି ବହି ଧରି କଣ କହିଲେ ?

୫—କାହିଁକି କୃଷ୍ଣ ପୁରସ୍କାର ପାଇଲା ?

୬—ବିଷ୍ଣୁକୁ ପିଲାମାନେ କଣ କହିଲେ ?

୭—ତହିଁରେ ବିଷ୍ଣୁ କି ଉତ୍ତର ଦେଲା ?

୮—ଆମ୍ଭମାନଙ୍କୁ କଣ କରିବା ଉଚିତ ?

## ୧୭ ପାଠ ।

## ଛଅଲ ଏବଂ ବ୍ୟାଘ୍ର ।





### ଅର୍ଥ ।

କ୍ଳାନ୍ତ—ଥକ୍କିଯିବା । ଗର୍ତ୍ତ—ଗାଡ଼ ।

ଶଙ୍କିତ—ଭୀତ । ନିର୍ବୋଧ—ମୂର୍ଖ ।

ଭର୍ତ୍ସନା—ତିରସ୍କାର । ନିଷ୍ଠୁର—ନିର୍ଦ୍ଦୟ ।

କୌଣସି ଛତାବାଧ ଏକ ଛଅଲର ନିତାନ୍ତ ପଛେ ପଛେ ଦୌଡ଼ିବାରୁ ଛଅଲ କ୍ଳାନ୍ତ ହୋଇ ଧାଇଁ ଧାଇଁ ଦୈବଯୋଗେ କୌଣସି ବ୍ୟାଘ୍ରର ଗର୍ତ୍ତ ଦେଇ ଗଲା । ବ୍ୟାଘ୍ର ଆପଣାର ପ୍ରାତଃକାଳରେ ଅାହାର୍ ଖାଇ ଶୟନ କରିଥିଲା । ସେହି ଦୌଡ଼ରେ ତାହାର ନିଦ୍ରା ଭଙ୍ଗ ହେଲାରୁ ବ୍ୟାଘ୍ର ଛତାବାଧକୁ ଆପଣା ସୀମା ମଧ୍ୟରେ ଲୁଦାଇବାର ଦେଖି କ୍ରୋଧରେ ଗର୍ଜ୍ଜନ କଲା । ମାତ୍ର ସେହିକ୍ଷଣ ଦୁର୍ଜ୍ଜନ ଛତା ଶଙ୍କିତ ହୋଇ ଆପଣାର ଶିକାରର ପଛେ ଆଉ ଦୌଡ଼ିଲା ନାହିଁ । କ୍ଳାନ୍ତ ଏବଂ ଭୟାଳୁ ଛଅଲ ଏହା ଦେଖିଲାକ୍ଷଣି ନିର୍ବୋଧପୂର୍ବକ ତିରସ୍କାର କଲା "କେବଳ ମହାନ୍ ଏବଂ ଉଦାର ଲୋକେ ଏ ପ୍ରକାର ଦୟା କରନ୍ତି" । ବ୍ୟାଘ୍ର ପ୍ରାଣରକ୍ଷା କଲା ବୋଲି ଛଅଲ ତାକୁ ଧନ୍ୟବାଦ ଦେବାକୁ ଗଲା । ବ୍ୟାଘ୍ର ସମାଦର କରିବାରୁ ସେ ଏକାବେଳକେ ତାକୁ ବିଶ୍ୱାସ କଲା ଆଉ ତାହାର ଆଶ୍ରୟରେ ରହିବାକୁ ସାହସପୂର୍ବକ ପ୍ରାର୍ଥନା କଲା ।

ବ୍ୟାଘ୍ର ତାହାର କଥାରେ ସନ୍ତୁଷ୍ଟ ହୋଇ ସମ୍ମତ ହେଲା । ଉପରେ ଚଥଲ କର୍ଣ୍ଣମୂଳରେ ଅହ୍ଵାର ଓ ପାନ କର ଘୃଣା କଲା "ମୁଁ ଏହି ଭକ୍ଷକର ଆଶ୍ରୟରେ ଥିଲେ ଅନେକ ଦିନ ପର୍ଯ୍ୟନ୍ତ କଷ୍ଟପଦରେ ରହିବି"। ମାତ୍ର ହାୟ ! ଅନ୍ୟ ଦିନ ପ୍ରାତଃକାଳରେ ଏହି କଷ୍ଟଶିତ ଚଥଲ ଜାଣିଲା ଯେ ତାହାର ଏପ୍ରକାର ବିଗ୍ରହ କରିବାର ଭ୍ରମ ଥିଲା । କଷ୍ଟର ବ୍ୟାଘ୍ର କ୍ଷୁଧାର୍ତ୍ତ ହେଲାକ୍ଷଣି ସେହି କର୍ଣ୍ଣାଧାରୀ ଅତିଥିକୁ ଧରି ଭକ୍ଷଣ କଲା ।

## ବନାନ୍ ।

ଶଯ୍ୟନ । ବ୍ୟାଘ୍ର । ଗର୍ଜ୍ଜନ । ବିଶ୍ଵାସ । ସନ୍ତୁଷ୍ଟ । କ୍ଷୁଧାର୍ତ୍ତ ।

## ପ୍ରଶ୍ନ ।

୧—ଚଥଲର ପଛେ କିଏ ଗୋଡ଼ାଇଲା ?

୨—ଚଥଲ କେଉଁ ସ୍ଥାନ ଦେଇ ଗଲା ?

୩—ସେହି ଦୌଡ଼ରେ କାହାର ନିଦ୍ରା ଭଙ୍ଗ ହେଲା ?

୪—ଚଥଲ କେଉଁଠାରେ ରହିଲା ?

୫—ସେ କଣ ବିଗ୍ରହ କଲା ?

୬—ଅନ୍ୟ ଦିନ କ ଦଶା ହୋଇଲା ?

୭—ଏଥିରୁ କ ଉପଦେଶ ପାଇଲ ?

## ନୀତି ।

## ପଦ୍ୟ ।

## ଅର୍ଥ ।

ଶଯ୍ୟନ—ନିଦ୍ରା ।

କର୍କଶ—କଠୋର ।

ତେଜି—ଛାଡ଼ି ।

କପଟ—ଛଳ ।

ଅହିତ—ଅମଙ୍ଗଳ ।

ତ୍ୟାଗ—ଛାଡ଼ିବା ।

ନମ୍ର—ବିନୟ ।

ଶର୍ଯ୍ୟନ ତେଜି ଶିଶୁ ବେଗେ ଉଠ । ମୁଖ ଧୋଇଣ ପଢ଼ିଯାଅ ପାଠ । ୧
ଅସାଧୁ ବାଳକ ସଙ୍ଗ ନୋହିବ । ପର ଅହିତ କଥା ନ କହିବ । ୨ ।
ଗୁରୁ ଚରଣେ କରିବ ଭକତି । ପିତା ମାତାରେ ଥିବ ନମ୍ର ମତି ୩।
ମିଥ୍ୟା କଥା ନ ବସାଇବ ତୁଣ୍ଡେ । ଗୁରୁ ଆଦେଶ ବୋହିଥିବ ମୁଣ୍ଡେ । ୪
କର୍କଶ କଥା କାହାକୁ ନ କହି । ସକଳେ ଥିବ ଦୟାହିବ ବହି । ୫
କପଟ ତ୍ୟାଗ କରିଣ ସରଳ । ଭାବରେ ସବୁବେଳେ ପାଠ ପଢ଼ । ୬
ବିଦ୍ୟା ପଠନେ ଅଛୁ ବହୁ ଲାଭ । ଦେଖ ପଣ୍ଡିତମାନଙ୍କର ଭାବ । ୭
ବୁଦ୍ଧି ବିବେକ ଦୟା ଧର୍ମ୍ମ ଗୁଣ । ସବୁ ଜନ୍ମଇ ବିଦ୍ୟାରୁ ଟି ଜାଣ । ୮
ଏଣୁ କହଇ ଛାଡ଼ି ଅଳସକୁ । ମନ ଲଗାଇଣ ପଢ ବିଦ୍ୟାକୁ । ୯

---

## ୧୮ ପାଠ ।

### ବ୍ୟାଘ୍ର ।



ଅର୍ଥ ।

ଭୟାନକ—ଭୟଙ୍କର । ବଳବାନ୍—ବଳିଷ୍ଠ ।

ଝାମ୍ପ—ଝମ୍ପିବା । ଅଳସୁଆ—ଜପତ ।

ଦ୍ରୁତଗାମୀ—ବେଗଗାମୀ । ମିତ୍ର—ମିତ ।

ବ୍ୟାଘ୍ର ବିଲୁଆଜାତିର ଏକ ଜନ୍ତୁ । ମାତ୍ର ସାଧାରଣ ଗୃହବାସୀ ବିଲୁଆଠାରୁ ବଡ଼ ଭୟାନକ ଏବଂ ବଳବାନ୍ ହୁଏ । ଏହାର ଚର୍ମ୍ମ ରଙ୍ଗ କମଳାଫଳ ପରି ପିଙ୍ଗଳ ଆଉ ପିଠି ପାର୍ଶ୍ୱଦେଶ ଓ ପୁଚ୍ଛ ବଡ଼ ବଡ଼ କଳାଗାରରେ ଚିତ୍ରିତ ଥାଏ । ଏହା ଗଳାର କେତେକ ଅଂଶ ଶୁକ୍ଳବର୍ଣ୍ଣ ଓ ପେଟର ନିମ୍ନଭାଗ ମଧ୍ୟ ସେହିପରି ଅଟେ । ବଙ୍ଗପ୍ରଦେଶୀୟ ବ୍ୟାଘ୍ର ସର୍ବାପେକ୍ଷା ବୃହତ୍ ଏବଂ ସୁନ୍ଦର । ବ୍ୟାଘ୍ର ଦିନ ସାରିଯାଏଁ ଖାଦ୍ୟ ଖୋଜି ବୁଲୁଥାଏ ଆଉ ମେଣ୍ଢା ବୁକା ଓ ଗୋରୁ ସୁଦ୍ଧା ଦେଖିଲେ ଧରି ନେଇ ଯାଏ । ବ୍ୟାଘ୍ର ଦୂରରୁ ବେଗେ ଓ ଶିକାର ଉପରକୁ ଝାମ୍ପ ମାରିବା ପର୍ଯ୍ୟନ୍ତ ଲୁଚି ରହେ । ଯେଉଁ ବ୍ୟାଘ୍ର ମନୁଷ୍ୟ ଖାଏ ସେ କାକୁସ୍ରେଶଗ୍ରସ୍ତ ପଶୁ ପରି ଦିଶେ । ପ୍ରାୟ ବୃଦ୍ଧ ଓ ଅଳସୁଆ ବ୍ୟାଘ୍ର-ମାନେ ମନୁଷ୍ୟ ଶିକାର କରିବାକୁ ସହଜ ମଣନ୍ତି । କାରଣ କି ଏମାନେ ଯୁବା ଓ ସତର୍କ ଅବସ୍ଥାରେ ଦ୍ରୁତଗାମୀ ହରିଣ ଆଉ ଅନ୍ୟାନ୍ୟ ଜନ୍ତୁମାନଙ୍କୁ ଯେରୂପ ଶିକାର କରୁଥିଲେ, ତଦପେକ୍ଷା ସହଜରେ ମନୁଷ୍ୟମାନଙ୍କୁ ଶିକାର କରିପାରନ୍ତି । ଗ୍ରାମର ଲୋକମା-ନେ ଏହି ପଶୁମାନଙ୍କୁ ଉତ୍ତମରୂପେ ଜାଣନ୍ତି । ସେମାନେ ଏମାନଙ୍କୁ ଶେର ବାଘ କହନ୍ତି । ଯେଉଁ ବଣରେ ଏମାନେ ଯାତାୟାତ କରନ୍ତି, ସେହି ବଣର ନିକଟବର୍ତ୍ତୀ ଗ୍ରାମର ଲୋକମାନେ ବଡ଼ ଭୟରେ ଥାନ୍ତି । ଏମାନଙ୍କ ଭୟରେ ଅନେକ କୃଷକ କ୍ଷେତ୍ରକୁ ଯାଇ ପାରନ୍ତି ନାହିଁ । ଏଣୁକରି ବଡ଼ ବଡ଼ ଭୂମି ପଡ଼ିଆ ରହିଯାଏ । ମଧ୍ୟ ସମୟ ବିଶେଷରେ ଗ୍ରାମୀୟ ଲୋକମାନେ ଗ୍ରାମ ତ୍ୟାଗ କରି ପଳାନ୍ତି । ଅଳ୍ପ ଦିନ ହେଲା ସରକାର ଯଥେଷ୍ଟ ପୁରସ୍କାର ଦେଉଥିବାରୁ ଏରୂପ [illegible] ଅନେକ ପଶୁ ବଧ ହୋଇଅଛନ୍ତି । ଯେ କେହି ମନୁଷ୍ୟଭକ୍ଷୀ ବ୍ୟାଘ୍ର

ମାରେ ବ୍ୟାଘ୍ରଦ୍ୱାରା ହୋଇଥିବା କ୍ଷତି ପରିମାଣ ଅନୁସାରେ ତାକୁ ଟ ୨୦୦ ଙ୍କା ( ୨୦ ପାଉଣ୍ଡ ) ରୁ ଟ ୩୦୦ ଙ୍କା ( ୩୦ ପାଉଣ୍ଡ ) ପୁରସ୍କାର ଦିଆ ଯାଏ । ଏହି କ୍ଷତିର ପରିମାଣ ଜିଲ୍ଲାର ପ୍ରଧାନ ମାଜି-ଷ୍ଟ୍ରେଟଙ୍କଦ୍ୱାରା ନିଶ୍ଚୟ ହୁଏ । ଯେଉଁ ମନୁଷ୍ୟମାନେ ଏରୂପ ପଶୁ ବଧ-କରି ପୃଥିବୀକି ମୁକ୍ତ କରନ୍ତି ସେମାନେ ଯେ କେବଳ ଶିକାରୀ ଅଟନ୍ତି ଏମନ୍ତ ନୁହେ ମାତ୍ର ମନୁଷ୍ୟଜାତିର ମିତ୍ର ସୁଦ୍ଧା ଅଟନ୍ତି ।

ବନାନ ।

ପୁଚ୍ଛ । ଶୃଙ୍ଗ । ଶିକାର । କୃଷକ । କ୍ଷତି । ପୃଥିବୀ ।

ପ୍ରଶ୍ନ ।

୧—ବ୍ୟାଘ୍ର କେଉଁ ଜାତିର ଜନ୍ତୁ ?

୨—ତାହାର ବର୍ଣ୍ଣ କିପରି ?

୩—ବଙ୍ଗପ୍ରଦେଶର ବ୍ୟାଘ୍ର କିପ୍ରକାର ଅଟେ ?

୪—ବ୍ୟାଘ୍ର ସ୍ୱତି ଦିନ କଣ କରୁଥାଏ ?

୫—ସେ କେଉଁବେଳେ ଯାଏ ଲୁଚିଥାଏ ?

୬—ଅଳସୁଆ ବାଘ କଣ ଖାଇବାକୁ ସହଜ ମଣନ୍ତି ?

୭—କାହିଁପାଇଁ ଅନେକ କୃଷକ କ୍ଷେତ୍ରକୁ ଯାଇ ପାରନ୍ତି ନାହିଁ ?

୮—ଯେ ମନୁଷ୍ୟଖିଆ ବ୍ୟାଘ୍ର ମାରେ ସେ କିରୂପ ପୁରସ୍କାର ପାଏ ?

---

## ୧୯ ପାଠ ।

### କପା ।

ଅର୍ଥ ।

କୋମଳ—କଅଁଳ । ବିଦୀର୍ଣ୍ଣ—ଫାଟିବା । ପରିପକ୍ୱ—ପାଚିଲା । ତନ୍ତୁ—ସୂତା । ବୀଜ—ମଞ୍ଜି । ଦୃଢରୂପେ—ଶକ୍ତରୂପେ ।

[illegible] କ୍ଳେମ୍ପର ଅତି କୋମଳ ପଦାର୍ଥ । ଏହା ଯେଉଁ ବୃକ୍ଷସ୍ଥିତ ବୀଜର ଚତୁର୍ଦ୍ଦିଗରେ ଜନ୍ମେ । ପୃଥିବୀ ମଧ୍ୟରେ ନାନା ପ୍ରକାର କପା

ବୃକ୍ଷ ଅଛି । ତନ୍ମଧ୍ୟରୁ କେତେକ ବୃହତ୍, କେତେକ ଗୁଳ୍ମସ୍ୱରୂପ ଏବ କେତେକ କ୍ଷୁଦ୍ରବୃକ୍ଷ ତୁଲ୍ୟ ହୁଏ । ଏସବୁ ମଧ୍ୟରୁ ଶେଷୋକ୍ତ ବୃକ୍ଷ ସର୍ବାପେକ୍ଷା କାର୍ଯ୍ୟୋପଯୋଗୀ । ଏହା ଆମେରିକା, ଭାରତବର୍ଷ ଓ ଅନ୍ୟାନ୍ୟ ଉଷ୍ଣଦେଶରେ ଉତ୍ପନ୍ନ ହୁଏ । ଆମେରିକା ମହାଦେଶରେ ଲୋକମାନେ ଏହାକୁ ମାର୍ଚ୍ଚ ମାସରେ ଏବଂ ଭାରତବର୍ଷରେ ବର୍ଷାର ଆରମ୍ଭରେ ବୁଣନ୍ତି । ଏ ବୃକ୍ଷ ଶୀଘ୍ର ବଢ଼ି ଯାଏ ଓ ପ୍ରାୟ ୨୦ ଇଞ୍ଚ ଅଥବା ୨ ଫୁଟ ବଢ଼ିଥାଏ । ଏହାର ପତ୍ର ସବୁ ଅତ୍ୟନ୍ତ ସାରୁଆ ଓ ପୁଷ୍ପ ଫିକା ହଳଦୀ ବର୍ଣ୍ଣର ହୁଏ । ଯେତେବେଳେ ଫୁଲ ଝଡ଼ି ଯାଏ ସେତେବେଳେ ତହିଁରୁ ଗୋଲାକୃତି ଖୋଳା ଜାତ ହୁଏ । ତାହା ପରି-ପକ୍ୱ ହୋଇ ବିଦୀର୍ଣ୍ଣ ହେଲେ, ଶ୍ୱେତ ଓ କୋମଳ କପା ବାହାରି ହେବାର ଦେଖାଯାଏ । ଭାରତବର୍ଷରେ ଉତ୍ପନ୍ନ ହେଉଥିବା ପ୍ରାୟ ସମୁଦାୟ କପା ଇଂଲଣ୍ଡ ଦେଶକୁ ପଠାଯାଏ । ଏହାର ବଡ଼ ବଡ଼ ଗଣ୍ଠି ଲୌହପତ୍ରରେ ଅତି ଦୃଢ଼ରୂପେ ବନ୍ଧା ହୋଇ ରେଲଗାଡ଼ିରେ ବୋମ୍ବାଇକୁ ପଠାଯାଏ । ସେଠାରୁ ତାହା ବଡ଼ ଜାହାଜରେ ଇଂଲଣ୍ଡକୁ ପ୍ରେରିତ ହୋଇ ସୂତା କଟା ଯାଇ ପରେ ବିବିଧ ପ୍ରକାର ବସ୍ତ୍ର କଳରେ ବୁଣା ଯାଏ ।

### ବନାନ୍ ।

ଶେଷୋକ୍ତ । ପୁଷ୍ପ । ଶ୍ୱେତ । ଇଂଲଣ୍ଡ । ଉତ୍ପନ୍ନ ।

### ପ୍ରଶ୍ନ ।

୧—କପା କେଉଁପରି କୋମଳ ?

୨—ତାହା ବୀଜର କେଉଁ ଅଙ୍ଗେ ଥାଏ ?

୩—କପା କେତେ ପ୍ରକାର ହୁଏ ?

୪—ତନ୍ମଧ୍ୟରେ କେଉଁ କପା ଗଛ ଅଧିକ ଉପଯୋଗୀ ?

୫—ତାହା କେଉଁ କେଉଁ ଦେଶରେ ଓ କେଉଁ କେଉଁ ସମୟରେ ବୁଣନ୍ତି ?

୬—କପାବୃକ୍ଷ କେତେ ଡେଙ୍ଗା ହୁଏ ଓ ତହିଁରୁ କି ପ୍ରକାର କପା ଜାତ ହୁଏ ?

୭—ଭାରତବର୍ଷୀୟ କପା କେଉଁଠାକୁ ଯାଏ ଓ ସେଠାରୁ କ-ପଡ଼ ବା ପଠାଯାଏ ?

୮—ଇଂଲଣ୍ଡୀୟ ବସ୍ତ୍ର କାହିଁରେ ପ୍ରସ୍ତୁତ ହୁଏ ?

---

## ୧୦ ପାଠ ।





### ବଳଦ ଓ ସିଂହ ।

ଅର୍ଥ ।

ମାନସ—ଇଚ୍ଛା । ନିମନ୍ତ୍ରଣ—ଡାକିବାର ।
ଉପସ୍ଥିତ—ପ୍ରବେଶ । ହୃଷ୍ଟପୁଷ୍ଟ—ସ୍ଥୂଳମୋଟ ।
ଏତାଦୃଶ—ଏପରି । ସ୍ୱୀକାର—ଅଙ୍ଗୀକାର ।
ଆୟୋଜନ—ଜମା କରିବା ।

ଦିନେ ଏକ ସିଂହ ଗୋଟିଏ ବଳଦ ମାରିବାକୁ ମାନସ କଲା, ମାତ୍ର ବଳଦର ବଳ ଅଧିକ ହେବା ଯୋଗୁଁ ସେ ତାହା ନିକଟକୁ ଯାଇ ପାରିଲା ନାହିଁ । ତହିଁ ଉତ୍ତାରୁ ସେ ଛଳରେ ତାହା ପାଖକୁ ଯାଇ କହିଲା, "ଅହେ ବଳଦ, ଆମ୍ଭେ ଗୋଟାଏ ହୃଷ୍ଟପୁଷ୍ଟ ମେଣ୍ଢାକୁ ମାରିଅଛୁଁ । ଅତଏବ ଇଚ୍ଛା ଏହି କି ତୁମ୍ଭେ ଆଜି ରାତ୍ରରେ ଆମ୍ଭ ଘରରେ ଉପସ୍ଥିତ ହୋଇ ଭୋଜନ କରିବ ।" ତଦନନ୍ତର ବଳଦ ନିମନ୍ତ୍ରଣ ସ୍ୱୀକାର କରି ସିଂହ ଆଳୟକୁ ଗମନ କଲା । ସେଠାରେ ସିଂହ ଅନେକ କାଷ୍ଠ ଓ ବଡ଼ ୨ ହଣ୍ଡା ପ୍ରସ୍ତୁତ କରି ରଖିଥିଲା ।

ତାହା ଦେଖି ବଳଦ ଫେରି ଗଲା । ତହିଁରେ ସିଂହ କହିଲା, "ତୁମ୍ଭେ ଏଠାକୁ ଆସି କାହିଁକି ଫେରି ଯାଉଅଛ ?" ଏ କଥାରେ ବଳଦ ଉତ୍ତର କଲା, "ଆମ୍ଭେ ତୁମ୍ଭର ମାନସ ଜାଣିଲୁଁ, କାରଣ କ ମେଣ୍ଢା ଛୁଆ ନିମନ୍ତେ ଏତାଦୃଶ ଉଦ୍ୟମ ସମ୍ଭବ ନୁହେ, ମାତ୍ର ତାହାଠାରୁ ବଡ଼ କୌଣସି ଜନ୍ତୁ ସକାଶେ ତୁମ୍ଭେ ଆୟୋଜନ କରୁଥିବାର ବୋଧ ହୁଏ ।"

ଇହାର ତାତ୍ପର୍ଯ୍ୟ ଏହି—ହିଂସ୍ରକର କଥା ସତ୍ୟ ବୋଲି ଜ୍ଞାନ କରିବା ଆଉ ତାହା ସଙ୍ଗେ ପ୍ରୀତି ରଖିବା ବୁଦ୍ଧିମାନ୍ ବ୍ୟକ୍ତିର କର୍ତ୍ତବ୍ୟ ନୁହେ ।

ବନାନ୍ ।

ସିଂହ । ହୃଷ୍ଟପୁଷ୍ଟ । ନିମନ୍ତ୍ରଣ । ସମ୍ଭବ ।

ପ୍ରଶ୍ନ ।

୧—ସିଂହ କାହାକୁ ମାରିବାକୁ ମାନସ କଲା ?

୨—ବଳଦକୁ ସିଂହ କ ହେତୁରୁ ମାରି ପାରୁ ନ ଥାଏ ?

୩—ପଚ୍ଛେ ମାରିବାକୁ କେଉଁ ଉପାୟ ସ୍ଥିର କଲା ?

୪—ସେହି ଉପାୟରେ ବଳଦ ନ ମଲା କାହିଁକି ?

୫—ବୁଦ୍ଧିମାନ୍ ବ୍ୟକ୍ତିର କେଉଁ କଥା କରଣୀୟ ନୁହେ ?

## ୨୧ ପାଠ ।



## ବାନର ।

### ସ୍ୱକୀୟ କାର୍ଯ୍ୟରେ ମନ ଦିଅ ।

#### ଅର୍ଥ ।

ମାଛୁଅ—କେଉଟ । ନିରୀକ୍ଷଣ—ଦେଖିବା । ଜାଲ—ଫାନ୍ଦ ।
ଓହ୍ଲାଇ—ଉତ୍ତରି । ଆବଦ୍ଧ—ବନ୍ଦ ହେବା ।

ଗୋଟିଏ ମର୍କଟ ଏକ ବୃକ୍ଷ ଉପରେ ବସି ମାଛୁଅ ଲୋକମାନେ ନଦୀରେ ଜାଲ ପକାଉଥିବାର ନିରୀକ୍ଷଣ କରୁଥାଏ । ଦିନକରେ ସେ ମାଛୁଅମାନଙ୍କର ଅନୁପସ୍ଥିତ ସମୟରେ ସେମାନଙ୍କ ପରି ଜାଲ ପକାଇବାକୁ ବଡ଼ର କଲା । ଅତଏବ ସେ ବୃକ୍ଷରୁ ଓହ୍ଲାଇ ତଦନୁରୂପ କାର୍ଯ୍ୟ କରିବାକୁ ଲାଗିଲା । ମାତ୍ର ସେ ଜାଲରନ୍ଧ୍ରରେ ଆବଦ୍ଧ ହୋଇ ନିଶ୍ୱାସ ରୁଦ୍ଧ ହେବାରୁ ଅର୍ଦ୍ଧପ୍ରାଣ ହେଲା । ଏମନ୍ତ ସମୟରେ ସେ ବାନର କହିବାକୁ ଲାଗିଲା, "ହାୟ ! ଅମ୍ଭେ ଉପଯୁକ୍ତ ଫଳ ପାଇଅଛୁଁ, କାରଣ ଯାହା ଅମ୍ଭେ ଜାଣୁନାହିଁ, ତହିଁରେ ପ୍ରବୃତ୍ତ ହେବାର ଅମ୍ଭର ଉଚିତ ନ ଥିଲା ।"

ଇହାର ତାତ୍ପର୍ଯ୍ୟ ଏହି—ଯାହାର ଯେଉଁ କାର୍ଯ୍ୟ କରିବା ଶକ୍ତି ନ ଥାଏ ସେ ତହିଁରେ ପ୍ରବୃତ୍ତ ହେବା ଅବିଧେୟ ।

ବନାନ ।

କୃଷ । ଅନୁପସ୍ଥିତ । ଓଷ୍ଟାଇ । ଅର୍ଦ୍ଧପ୍ରାଣ ।

ପ୍ରଶ୍ନ ।

୧—ମର୍କଟ କେଉଁ କଥା ଦେଖୁଥାଏ ?

୨—ସେ ମାଛୁଆମାନେ ନ ଥିବାବେଳରେ କଣ କଲା ?

୩—ତହିଁରେ ତାହାର କି ଅବସ୍ଥା ଘଟିଲା ?

୪—ଅର୍ଦ୍ଧପ୍ରାଣ ହେବା ସମୟରେ ମର୍କଟ କି ଉତ୍ତର କରିଥିଲା ?

---

## ୨୨ ପାଠ ।

## ଜ୍ୟାଘ୍ରନ୍ୟାୟ ।

ଶବ୍ଦାର୍ଥ ।

କୃଷକ—ଚଷା । ଦୁର୍ଲ୍ଲଭ—ନ ମିଳିବା । ଅନାହାର—ନ ଖାଇବା । ଉତ୍କଣ୍ଠିତସ୍ୱର—ଦୀର୍ଘପାଟି । ପ୍ରସଙ୍ଗ—ବିଷୟ । ଅଜ୍ଞାତସାରରେ—ଅଜଣାରେ ।

ଆଜକୁ କେତେ ବର୍ଷ ହେଲା ଜଣେ କୃଷକ କୌଣସି ନଦୀତୀରରେ ବାସ କରୁଥିଲା । ସେ ଦରିଦ୍ର କୃଷକର ଏକ ଗାଈ ଥିଲା । ପରନ୍ତୁ ଅନାବୃଷ୍ଟି ହେତୁରୁ ତାହାର ଗାଈକୁ ତୃଣ ମିଳିବାର ଦୁର୍ଲ୍ଲଭ ହେଲା । ଏହେତୁରୁ ସେ କତାନ୍ତ ଦୁଃଖିତ ହେଲା । କାରଣ ତାହାର ଗାଈ ଅନାହାରରେ ମରିଗଲେ ସେ କେଉଁପରି ଜୀବନ ଧାରଣ କରିବ । ସେ ଦୀର୍ଘକାଳଯାଏ ଏ ପ୍ରସଙ୍ଗର ନାନାପ୍ରକାର ଚିନ୍ତା କଲା, ପରିଶେଷ-ରେ ସ୍ଥିର କଲା ଯେ ତାହାର ଗାଈ ମରିଯିବ । ନଚେତ୍ ତାହାକୁ ଗାଈ ନିମନ୍ତେ ତୃଣ ଖୋଜି ଆଣିବାକୁ ପଡ଼ିବ । ସେ ଯୁକ୍ତି ସମ୍ପୂର୍ଣ୍ଣ

କ୍ଷେତ୍ରର ନିକଟବର୍ତ୍ତୀ ଅନ୍ୟ ଏକ କୃଷକର କ୍ଷେତ୍ରରେ ପ୍ରବେଶ ହୋଇ ଧାନ ଛିଣ୍ଡିବାକୁ ଆରମ୍ଭ କଲା ଏବଂ ଉଚ୍ଚୈଃସ୍ୱରରେ କହିଲା "ସାଧୁତା ଅତି ଉତ୍ତମ ମାତ୍ର ଯଦି ମୋର ଗାଈ ବଞ୍ଚି ପାରେ" । ତତ୍ପରେ ସେ କିଛିକାଳ ନିବୃତ୍ତ ହୋଇ ଭାବନା କଲା "ମୁଁ କଣ କରୁଅଛି ?" ତଦନନ୍ତରେ ସେ ସେହି ଧାନକୁ ପୂର୍ବସ୍ଥାନରେ ରଖିବାକୁ ଲାଗିଲା ଆଉ ମନେ ମନେ ବିଚାର କଲା "ମୋର ଗାଈ ମଲେ ମରୁ କିନ୍ତୁ ମୁଁ ସାଧୁତା ପାଳନ କରିବି" । ସେ ଦରିଦ୍ର କୃଷକ ଆପଣା କ୍ଷୁଧାର୍ତ୍ତ ଗାଈର ବିଷୟ ପୁନର୍ବାର ଚିନ୍ତା କରି ଦେଖିଲା ସେ ଗାଈ ବିନା ବଞ୍ଚି ପାରିବ ନାହିଁ । ଅହୋ, ସାଧୁତା ଅତି ଉତ୍ତମ ଯଦି ମୋର ଗାଈ ନ ମରେ । ଏହା କହି ସେ ସେହି ସବୁ ଧାନଛିଡ଼ାକୁ ପୂର୍ବପରି ଛିଣ୍ଡି ଆଣିଲା । ଅବଶେଷରେ ସେ ଚୋରୀ ଦ୍ରବ୍ୟ ବାନ୍ଧି ନେବାକୁ ବସିଲା । ମାତ୍ର ଉଠାଇବା ସଙ୍କାଶେ ଲଇଁବା ସମୟରେ ତାହାର କର୍ଣ୍ଣରେ ଏହି ଶବ୍ଦ ପ୍ରବେଶ ହେଲା "ସାଧୁତା ଅତି ଉତ୍ତମ ଗାଈ ମରୁ ଯାଉ" । ଅତଏବ ସେ ଶେଷଥର ଧାନକୁ ଯଥାସ୍ଥାନରେ ରଖି ଘରକୁ ଚାଲିଗଲା । ପରଦିନ କ୍ଷେତ୍ରସ୍ୱାମୀ କୃଷକର ଅଜ୍ଞାତସାରେ ସମ୍ପୂର୍ଣ୍ଣ ଏକ ଗାଡ଼ି ଧାନ ତାହାର ଗୃହକୁ ନେଇ ଦେବାରୁ କୃଷକ ଅତିଶୟ ବିସ୍ମିତ ହେଲା । ସେହି ଦରିଦ୍ର ଲୋକକୁ କ୍ଷେତ୍ରସ୍ୱାମୀ ପ୍ରଥମରୁ କହିଲା "ସାଧୁତା ଅତି ଉତ୍ତମ ଏବଂ ତୁମ୍ଭର ଗାଈ ମରିବ ନାହିଁ" ।

ଟପା ଆପଣା କହିଥିବାର କଥା କ୍ଷେତ୍ରସ୍ୱାମିଠାରୁ ଶ୍ରବଣ କରି ହୃଦୟରେ ଅନୁଭବ କରିଥିବ ତାହା ତୁମ୍ଭେମାନେ ଅନୁମାନ କରିପାର । ଏଥିରୁ କ୍ଷେତ୍ରସ୍ୱାମୀ କ୍ଷେତ୍ରରେ ତାକୁ ଦେଖିଥିବାର ଓ ତାର କଥା ଶୁଣିଥିବାର ପ୍ରକାଶ ପାଇଲା । ସୁତରାଂ ଆପଣା ଦରିଦ୍ର ବନ୍ଧୁକୁ ସେ ଏରୂପ କୌତୁକଭାବରେ ସାହାଯ୍ୟ କଲା ।

ବନାନ ।

ଦୁଃଖିତ । ନିବୃତ୍ତ । ଚୋରୀ । ଶେଷ । ସମ୍ପୂର୍ଣ୍ଣ । ସ୍ୱାମୀ ।

ପ୍ରଶ୍ନ ।

୧—ଚଷା କେଉଁଠାରେ ବାସ କରୁଥିଲା ?

୨—କି ହେତୁରୁ ତାର ଗୋରୁକୁ ଘାସ ମିଳଲା ନାହିଁ ?

୩—ଘାସ ନ ପାଇବାରୁ ସେ କି ଉପାୟ କଲା ?

୪—କାହିଁକି ସେ ଅନ୍ୟର କ୍ଷେତରୁ ଘାସ ନ ଆଣି ଛାଡ଼ି ଆସିଲା ?

୫—କଣ ଦେଖି କୃଷକ ବିସ୍ମୟ ହେଲା ?

୬—ଏଥିରୁ କେଉଁ କଥା ପ୍ରକାଶ ପାଇଲା ?

---

୨୩ ପାଠ ।



ସୂର୍ଯ୍ୟ ।

ଅର୍ଥ ।

ସୂର୍ଯ୍ୟ—ରବି । କ୍ଷିତିଜ—ଆକାଶର ଯେଉଁ ଅଂଶ ଭୂମିରେ ଲାଗି-ଥିବାର ଚକ୍ଷୁରେ ଦେଖାଯାଏ । ଉଷ୍ଣତା—ଉତ୍ତାପ । ଅଚଳ—ସ୍ଥିର । ପରିକ୍ରମା—ଗ୍ରହ ଅଡ଼େ ବୁଲିବା । ପଶ୍ଚାତ—ଅନ୍ୟବେଳ ।

ଅତି ପ୍ରଭାତରେ ସୂର୍ଯ୍ୟଙ୍କୁ ଉଦୟ ସମୟରେ ଦେଖିଲେ କେତେ ଆଶ୍ଚର୍ଯ୍ୟ ଏବଂ ଆନନ୍ଦ ବୋଧ ହୁଏ । ପର୍ବତର ଟିପି ଉପରୁ [illegible] ପୂର୍ବ ଆଡ଼କୁ ଦେଖିଲେ ପ୍ରଥମରୁ ଆକାଶରେ ଅଳ୍ପ ଉଜ୍ଜ୍ୱଳ ଦିଶେ । ପରେ ସୂର୍ଯ୍ୟ କ୍ଷିତିଜରେ ଦୃଶ୍ୟ ହୁଅନ୍ତି । ତାହାଙ୍କ ଉଦୟରେ ତା [illegible]

ପ୍ରକାଶରୁ ସମୁଦାୟ ଭୂମଣ୍ଡଳ ଓ ଆକାଶ ଉଜ୍ଜ୍ୱଳ ହୋଇଯାଏ । ସୂର୍ଯ୍ୟଙ୍କଠାରୁ ପ୍ରାଣିମାନଙ୍କ ଉପର ଉପକାର ମିଳୁଅଛି । ତାହାଙ୍କଠାରୁ ଉଷ୍ଣତା ଓ ତେଜ ମିଳୁଅଛି । ତାହାଙ୍କ ଉଷ୍ଣତାରେ ବୃକ୍ଷ, ଲତା, ଘାସ ଆଦି ସବୁ ବଢୁଅଛି । ଯଦି ସୂର୍ଯ୍ୟଙ୍କ କିରଣ ସେ ସବୁ ଉପରେ ନ ପଡ଼ନ୍ତା ତେବେ ସେ ସବୁ କଦାଚ ବଢ଼ନ୍ତା ନାହିଁ । ଲୋକମାନେ କହନ୍ତି କି ପୂର୍ବଦିଗରେ ସୂର୍ଯ୍ୟ ଉଦୟ ହୁଅନ୍ତି ଆଉ ପଶ୍ଚିମରେ ଅସ୍ତ ହୁଅନ୍ତି । କେବଳ ଦେଖିବାରେ ଏପରି ଜଣାଯାଏ । ମାତ୍ର ବାସ୍ତବରେ ପୃଥିବୀ ସୂର୍ଯ୍ୟଙ୍କ ଚାରିଆଡ଼େ ବୁଲଇ । ସୂର୍ଯ୍ୟ ଅଚଳ ଅଟନ୍ତି । ପୃଥିବୀଠାରୁ ସୂର୍ଯ୍ୟ ଅଧିକ ଦୂରରେ ଅଛନ୍ତି । ପୃଥିବୀ ଏକ ବର୍ଷରେ ତାହାଙ୍କୁ ଥରେ ପରିକ୍ରମା କରଇ । ଦିବାରାତ୍ରରେ ଅଠ ପ୍ରହର ହୁଏ । ଦିବସରେ ଚାରି ଓ ରାତ୍ରରେ ଚାରି ପ୍ରହର । ଯେତେବେଳେ ସୂର୍ଯ୍ୟ ପୂର୍ବାରୁ ପ୍ରକାଶ ହୁଅନ୍ତି ତେତେବେଳେ ଆମ୍ଭେମାନେ ପ୍ରଭାତ କହୁଁ । ଦୁଇ ପ୍ରହର ଉତ୍ତାରେ ପ୍ରହରେ ପର୍ଯ୍ୟନ୍ତ ଅର୍ଥାତ୍ ୩ ବାଜିବା ପର୍ଯ୍ୟନ୍ତ ସମୟକୁ ଅପରାହ୍ନ ବୋଲାଯାଏ । ଯେତେବେଳେ ସୂର୍ଯ୍ୟ ପଶ୍ଚିମ ଦିଗକୁ ଯାଇ ଅସ୍ତ ହୁଅନ୍ତି, ସେ ସମୟକୁ ଆମ୍ଭେମାନେ ସନ୍ଧ୍ୟା କହୁଁ । ସୂର୍ଯ୍ୟାସ୍ତରୁ ସୂର୍ଯ୍ୟୋଦୟ ହେବା ପର୍ଯ୍ୟନ୍ତ ଯେଉଁ ସମୟ ଲାଗଇ ତାକୁ ରାତ୍ରି ବୋଲାଯାଏ ।

ବନାନ୍ ।

ସୂର୍ଯ୍ୟାସ୍ତ । ମଧ୍ୟାହ୍ନ । ଭୂମଣ୍ଡଳ । ସୂର୍ଯ୍ୟୋଦୟ । ଆଶ୍ଚର୍ଯ୍ୟ ।

ପ୍ରଶ୍ନ ।

୧—ପ୍ରାତଃକାଳରେ ସୂର୍ଯ୍ୟଙ୍କୁ ଦେଖିଲେ କିପରି ବୋଧ ହୁଏ ?

୨—ସୂର୍ଯ୍ୟ କେଉଁଠାରୁ ଆସିଲେ ସବୁଆଡ଼ ଉଜ୍ଜ୍ୱଳ ଦିଶେ ?

୩—ସୂର୍ଯ୍ୟଙ୍କଠାରୁ ଆମ୍ଭମାନଙ୍କର କି ଲାଭ ହୁଏ ?

୪—କି ହେତୁରୁ ପୂର୍ବରେ ସୂର୍ଯ୍ୟ ଉଦୟ ଓ ପଶ୍ଚିମରେ ଅସ୍ତ ହେବା ପରି ଜଣାଯାଏ ?

୫—ପୃଥିବୀ ସୂର୍ଯ୍ୟଙ୍କୁ ଏକ ବର୍ଷରେ କେତେଥର ବୁଲେ ?

୬—ଯଥାର୍ଥରେ ସୂର୍ଯ୍ୟ ଓ ପୃଥିବୀ ମଧ୍ୟରେ କଏ ଅଚଳ ?

୭—ପ୍ରଭାତ, ପୂର୍ବାହ୍ନ, ସନ୍ଧ୍ୟା ଓ ରାତ୍ରି କାହାକୁ କହନ୍ତି ?

---

୨୪ ପାଠ ।

ପାଣି ।

ଅର୍ଥ ।

ଜୀବନାଧାର—ପ୍ରାଣରକ୍ଷକ । ଦୂଷିତ—ମଇଳା । ବିଷ—ଗରଳ ।
ସଢ଼ିଯାଏ—କୁହିଯାଏ । ପରିଷ୍କାର—ସଫା । ଉପକାର—ମଙ୍ଗଳ ।

ପାଣି ସମସ୍ତଙ୍କ ଜୀବନାଧାର ଅଟେ । ଶସ୍ୟ, ଫୁଲ, ଫଳ ଆଦି ସବୁ ପାଣିରୁ ଜାତ ହୋଇ ବଢ଼ଇ । ପାଣି ନ ଥିଲେ କୌଣସି ପ୍ରାଣୀ କଦାପି ବଞ୍ଚି ପାରିବ ନାହିଁ । ମାତ୍ର ପାଣି ଦୂଷିତ ହେଲେ ବିଷ ପରି ହୋଇଯାଏ ଅର୍ଥାତ୍ ତାହା ପାନ କଲେ ମନୁଷ୍ୟମାନେ ଶୀଘ୍ର ପୀଡ଼ିତ ହୋଇଯାନ୍ତି । ଯେବେ ନଈଁରେ ଘାସ, ଶଢ଼ା ବା ପତ୍ରାଦି ପଡ଼ି ସଢ଼ି ଥାଏ ଅଥବା ପଶୁମାନେ ଗୁହାଳ ଘଟାନ୍ତି ତେବେ ତାହା ଦୂଷିତ ହୁଏ । ପବନରେ ନଈଁର ଗନ୍ଧ ଯେତେଦୂର ପର୍ଯ୍ୟନ୍ତ ସଞ୍ଚାରିତ ହୁଏ ସେତିକି ଦୂର ପର୍ଯ୍ୟନ୍ତ ଅନେକ ରୋଗ ଉତ୍ପନ୍ନ ହୁଏ । କୂପ ବନ୍ଧ ଆଦିରେ ମଧ୍ୟ ଏହି ଦୋଷ ଦେଖାଯାଏ । ଏଥି ସକାଶେ ପାଣିର ତାତ୍ପର୍ଯ୍ୟ ବୁଝିବା ଉଚିତ । କୂପ ଓ ବନ୍ଧରେ କୁଟା ପତ୍ର ପଡ଼ି ନ ଦେବା ଉଚିତ । ନଈଁର ଘାଟ ଅଳ୍ପ ପରିଷ୍କାର ରଖିବା ସୁଦ୍ଧା କର୍ତ୍ତବ୍ୟ । ଯେଉଁଠାରେ ଭଲ ପାଣି ମିଳେ ନାହିଁ, ସେଠାରେ ପାଣିକି ଉଷୁ କରି ପିଇବା ଉଚିତ ଏବଂ ତାହା ଯଦି ହୋଇ ନ ପାରେ ତେବେ ଛାଣି କରି ପିଇଲେ ମଧ୍ୟ ଉପକାର ହୁଏ ।

ବନାନ ।

କର୍ତ୍ତବ୍ୟ । ଶସ୍ୟ । ଦୂଷିତ । ଶୀଘ୍ର । ପୀଡ଼ିତ । ପରିଷ୍କାର ।

## ପ୍ରଶ୍ନ ।

୧—କଣ ସମସ୍ତଙ୍କ ଜୀବନାଧାର ?

୨—ମନୁଷ୍ୟମାନେ କେଉଁ ପାଣି ପିଇଲେ ପୀଡ଼ିତ ହୁଅନ୍ତି ଓ ତାହା କେଉଁ ପରି ମଇଳା ହୁଏ ?

୩—କପରି କଲେ ପାଣି ଦୂଷିତ ନ ହେବ ?

୪—କପରି ପାଣି ଦୂଷିତ ହୁଏ ?

୫—ଭଲ ଜଳ ନ ମିଳିବା ସ୍ଥାନରେ କ ପ୍ରକାରେ ପାଣି ବ୍ୟବହୃତ ହେବ ?

## ପରିଶ୍ରମ ।

### ପଦ୍ୟ ।

### ଅର୍ଥ ।

ଦିବାକର—ସୂର୍ଯ୍ୟ । ବାସର—ଦିବସ । ସ୍ୱବ୍ୟାପାର—ନିଜର କାର୍ଯ୍ୟ । ମଧୁପ—ମହୁମାଛି । ସମୂହ—ଜାତି । ବୀଥି—ଶ୍ରେଣୀ । ଅନଳସ—ପରିଶ୍ରମ ।

ଉଦୟ ଶୈଳେ ଉଦେ ଦିବାକର ।
ଉଠ ବାଳକେ କର ସ୍ୱବ୍ୟାପାର । ୧ ।
ନିଜ କାର୍ଯ୍ୟରେ ଅଳସ ଛନ୍ଦରେ ।
ବସି ରହିଲେ ଦୁଃଖ ହେବ ପରେ । ୨ ।
ପରିଶ୍ରମେ ବିଦ୍ୟା ହୁଏ ପ୍ରାପତ ।
ଧନ ଏଥିରୁ ହେଉଛି ସମ୍ଭୂତ । ୩ ।
ବାଳକାଳୁଁ ଯେହୁ ବିଦ୍ୟା ନ ପଢ଼େ ।
ପଛେ ଶରୀର ପରିଶ୍ରମେ ପଡ଼େ ।
ଏଣୁ କହୁଛି ବାଳେ ବିଦ୍ୟା ପଢ଼ ।
ମନଃଶ୍ରମେ କାଟ ଘୁଣବାରଣ । ୫ ।

ଦେଖ ପକ୍ଷିଏ ନିଜ ବସା ଛାଡ଼ି ।
ଗଲେଣି ବନେ ବନେ ଖାଦ୍ୟ ଲୋଡ଼ି । ୬ ।
ମଧୁପଗଣ ଗାଥି ଗାଥି ହୋଇ ।
ପୁଷ୍ପବନକୁ ଯାନ୍ତି ମଧୁ ନେଇ । ୭ ।
ପଶୁମାନେତ ହୋଇ ନିରଳସ ।
ବିଲ ମଧ୍ୟକୁ ଖୋଜିଗଲେ ଘାସ ।୮।
ଏହାଙ୍କରୁ କି ତୁମ୍ଭେ ଅଟ ହୀନ ।
ପାଇ କରଣ ଦୁର୍ଲ୍ଲଭ ଜନମ । ୯ ।
ପରିଶ୍ରମ ମୂଳ ସବୁ ସୁଖର ।
ଏଣୁ ବାଳକେ ପରିଶ୍ରମ କର । ୧୦ ।

## ୨୫ ପାଠ ।



ମେଣ୍ଢା ।

ଅର୍ଥ ।

ଉପଯୋଗୀ—ଉପକାରୀ । ଚର୍ବୀ—ଚସ । ନିର୍ମିତ—ପ୍ରସ୍ତୁତ । ସ୍ୱଚ୍ଛ—ନିର୍ମଳ । ବସ୍ତ୍ର—କପଡ଼ା । ରକ୍ଷାପାନ୍ତି—ବଞ୍ଚନ୍ତି ।

ମେଣ୍ଢା ବଡ଼ ଉପଯୋଗୀ ପଶୁ । ଏହାର ଲୋମରେ ବସ୍ତ୍ର ପ୍ରସ୍ତୁତ ହୁଏ । ଏହାର ଛାଲରେ ଦସ୍ତାନା, ପାଣ୍ଡୋଇ ଆଦି ନିର୍ମିତ ହୁଏ । ତାହା ପୁସ୍ତକ ବାନ୍ଧିବାରେ ମଧ୍ୟ ଲାଗଇ । କେବେ୨ ଲୋକମାନେ ଏହାର ଛାଲରୁ ଲେଖିବା ସକାଶେ ଚର୍ମପତ୍ର ପ୍ରସ୍ତୁତ କରଥାନ୍ତି ।

ଅଧିକ ଲୋକ ଏହାର ମାଂସ ଖାନ୍ତି । ଏହାର ଚର୍ମରେ ବଡି ନିର୍ମିତ ହୁଏ, ତାହା ସ୍ପଚରେ ଜାଳିବାକୁ ହୁଏ । ଗ୍ରୀଷ୍ମ କାଳରେ ଲୋକମାନେ ମେଣ୍ଢାର ଲୋମ କାଟନ୍ତି । କାରଣ ସେହି ଋତୁରେ ଲୋମ କାଟିଲେ ଏହାକୁ ଦୁଃଖ ବୋଧ ହୁଏ ନାହିଁ । ପ୍ରଥମରେ ଲୋମରେ ମଳ, କର୍ଦ୍ଦମ ଓ କୁଟା ପରିପୂର୍ଣ୍ଣ ଥାଏ । ଧୂଳି କରି ମଳ ଓ ଲୋମ ଅଲଗା କାଢ଼ାଇ କରି ତାହା ସ୍ୱଚ୍ଛ କରାଯାଏ । ତତ୍ପରେ ଚରଖାରେ ତହିଁର ସୂତା କଟାଯାଏ । ତଦନନ୍ତର ତହିଁରେ କଳା, ହଳଦିଆ ଓ ପାଟୁଆ ରଙ୍ଗ ଦେଇ ବସ୍ତ୍ର ବୁଣାଯାଏ । ମନୁଷ୍ୟମାନେ ତହିଁରେ ପିନ୍ଧିବା ପକାଲେଖ କୁର୍ତ୍ତା, ଅଙ୍ଗରଖା ଆଦି ନିର୍ମାଣ କରନ୍ତି । ଲୋମଜ ବସ୍ତ୍ର ଅଧିକ ଉଷ୍ଣ ହୁଏ । ତହିଁ ନିମନ୍ତେ ଶୀତକାଳରେ ସାନ ବଡ଼ ସମସ୍ତେ ଲୋମବସ୍ତ୍ର ପିନ୍ଧି ଶୀତରୁ ରକ୍ଷା ପାନ୍ତି ।

ବନାନ ।

ବସ୍ତ୍ର । ମାଂସ । ଗ୍ରୀଷ୍ମ । ପରିପୂର୍ଣ୍ଣ । ପିନ୍ଧିବା ।

ପ୍ରଶ୍ନ ।

୧—ମେଣ୍ଢା କିପରି ପଶୁ ?

୨—ତାହାର ଲୋମରେ କି୨ ବସ୍ତ୍ର ପ୍ରସ୍ତୁତ ହୁଏ ?

୩—ତାହାର ଖାଲ ଓ ଚର୍ମରେ ବା କେଉଁ ପଦାର୍ଥ ପ୍ରସ୍ତୁତ ହୁଏ ?

୪—କେଉଁ ସମୟରେ ମେଣ୍ଢା ଲୋମ କଟାଯାଏ ?

୫—ସୂତା କାଟିବା ଆଗରୁ କେଉଁ ଉପାୟରେ ମେଣ୍ଢା ଲୋମକୁ ପରିଷ୍କୃତ କରାଯାଏ ?

୬—ସେହି ସୂତା ନାନାବର୍ଣ୍ଣ କେଉଁପରି କରାଯାଏ ?

୭—ତହିଁରେ କେଉଁ୨ କପଡ଼ା ତିଆର ହୁଅଇ ?

୮—ଲୋମଜବସ୍ତ୍ର କେଉଁକାଳରେ ଅଧିକ ବ୍ୟବହୃତ ଆଉ ତହିଁର କାରଣ କି ?

## ୨୬ ପାଠ ।



### ମଧୁମକ୍ଷିକା ।

ଶେଷରେ—ପ୍ରାନ୍ତରେ । ପ୍ରଭାତ—ସକାଳ ।

ଜାଗରତ—ଚେତବା । ସଞ୍ଚୟ—ଜମା ।

ପରିଶ୍ରମୀ—ମେହନତି । ଶ୍ରେଷ୍ଠ—ପ୍ରଧାନ ।

ରାତ୍ରି ଶେଷରେ ପ୍ରଭାତ ହେଲାକ୍ଷଣି ମଧୁମକ୍ଷିକା ଜାଗରତ ହୋଇ ପୁଷ୍ପମଧୁ ସଞ୍ଚୟ କରିବାକୁ ଯାତ୍ରା କରଇ । ସେ ଶ୍ରମରେ କାତର ନ ହୋଇ ଗୁଣୁ ଗୁଣୁ ସ୍ୱରେ ଯାଇ ପୁଷ୍ପ ଉପରେ ବସେ ଓ ମଧୁ ସଞ୍ଚୟ କରେ । ସେ ନିତାନ୍ତ ପରିଶ୍ରମୀ । କଦାପି ସମୟକୁ ବୃଥା ନଷ୍ଟ ନ କରେ ଓ ନିରନ୍ତର ଶ୍ରମ କରିବାରେ ରତ ଥାଏ । ଅତଏବ ହେ ସୁବୋଧ ବାଳକମାନେ, କାର୍ଯ୍ୟର ସମୟର କ୍ଷଣମାତ୍ର ବୃଥା କ୍ଷେପଣ ନ କର । ମକ୍ଷିକା ସାମାନ୍ୟ ପ୍ରାଣୀ ହେଲେ ମଧ ତାକୁ ଶ୍ରେଷ୍ଠ ଜ୍ଞାନ କର ତାହାଠାରୁ ଶ୍ରମ ଶିକ୍ଷା କର ଓ ନିରନ୍ତର ଆପଣା କାର୍ଯ୍ୟରେ ତତ୍ପର ରହ ।

### ବନାନ ।

ମଧୁମକ୍ଷିକା । ପୁଷ୍ପ । ନଷ୍ଟ । ଶ୍ରେଷ୍ଠ । ଜ୍ଞାନ ।

### ପ୍ରଶ୍ନ ।

୧—ମଧୁମକ୍ଷିକା ପ୍ରଭାତରୁ କଣ କରେ ?

୨—ସେ କେଉଁ ବିଷୟରେ କାତର ନୁହେ ?

୩—ସେ ପୁଷ୍ପ ଉପରେ କିପରି ବସେ ?

୪—ମଧୁମକ୍ଷିକାର କେଉଁ ଗୁଣ କଥା ବର୍ଣ୍ଣିତ ?

୫—ତାହାଠାରୁ କେଉଁ କଥା ବାଳକଙ୍କୁ ଶିଖିବା ଉଚିତ ?

## ୨୭ ପାଠ ।

## ମାତା ପିତାର ଆଜ୍ଞା ପାଳନ ।

### ଅର୍ଥ ।

ପୁତ୍ର—ପୁଅ । ବୃଥା—ଅକାରଣ । ବିବେକୀ—ବିଚାରକ ।

ହିତକାରୀ—ଉପକାରୀ । ପ୍ରପନ୍ନ—ସନ୍ତୁଷ୍ଟ । ମୂଲିଆ—ମୂଲ ନେଇ ଯେ କାର୍ଯ୍ୟ କରେ ।

କୌଣସି ନଗରରେ ଏକ ମହାଜନ ଥିଲା । ତାହାର ଦୁଇ ଗୋଟି ପୁତ୍ର ଥିଲେ । ଜଣକର ନାମ ଗୋପାଳ, ଅନ୍ୟଟିର ନାମ ମୋହନ । ପିତା ସେମାନଙ୍କୁ କହିବା କରୁଥିଲେ "ହେ ପୁତ୍ରମାନେ ! ତୁମ୍ଭେମାନେ ଆପଣା୨ ସମୟକୁ ବୃଥା କ୍ଷେପଣ ନ କର । ଭଲ ଲେଖାପଢ଼ି କିମ୍ବା ବୃତ୍ତି ଶିଖିଲେ ଆପଣା୨ ଜୀବନ ସୁଖ ସ୍ୱଚ୍ଛନ୍ଦରେ କାଟିବ । ଅତଏବ ପାଠଶାଳାକୁ ପ୍ରତିଦିନ ଯାଅ ଏବଂ ମନୋଯୋଗପୂର୍ବକ ଶିକ୍ଷା କର ।" ଗୋପାଳ ତାହାଙ୍କ କଥା ମାନିଲା ନାହିଁ । ସେ ମନରେ ବିଚାରିଲା ଯେ ବିଦ୍ୟା ଶିଖିବାର ଫଳ ଏହି ଯେ ଉତ୍ତମରୂପେ ଖାଇବାକୁ ମିଳିବ । ମାତ୍ର ଆମ୍ଭର ଘରେ ଏତେ ଧନ ଅଛି ଯେ, ବୃଥା ଖର୍ଚ୍ଚ ନ କଲେ ଘରେ ବସି ଅନାୟାସରେ ଆପଣା ଜୀବନ ଯାପନ କରି ପାରିବୁଁ । ଅତଏବ ପଢ଼ିବାର କୌଣସି ପ୍ରୟୋଜନ ନାହିଁ । ମାତ୍ର ମୋହନ ତାହାଠାରୁ ଅଧିକ ବିବେକୀ ଥିଲା, ସେ ବିଚାର କଲା ଯେ ମାତା ପିତା ଝର ଅନ୍ୟ କେହି ହିତକାରୀ ହୋଇ ନ ପାରେ ଏବଂ ସେମାନେ ମୋ-ଠାରୁ ଅଧିକ ଜ୍ଞାନୀ ଅଟନ୍ତି । ସେମାନଙ୍କର ଆଜ୍ଞା ମାନିଲେ ଭଲକା ଭଲୁ ଅବଶ୍ୟ ମଙ୍ଗଳ ହେବ । ଏରୂପ ବିଚାର କରି ସେ ପ୍ରତିଦିନ ପାଠଶାଳାକୁ ଯାଇ ଭଲ ପ୍ରକାରରେ ପଢ଼ୁଥାଏ । ପାଞ୍ଚ ଛଅ ବର୍ଷ ପରେ ମୋହନ ଲେଖାପଢ଼ା କରି ନିପୁଣ ହେଲା । ମାତ୍ର ଗୋପାଳ ଯେପରି ମୂର୍ଖ ଥିଲା ସେହିପରି ରହିଲା । ଦୈବଯୋଗରେ ପିତା ଜୀବି-ତରେ ଆଉ୨ ବ୍ୟବସାୟରେ ବଡ ହାନି ହେଲା । ଏତେ ଦୂର

ପର୍ଯ୍ୟନ୍ତ ହେଲା ଓ ତାହାଙ୍କ ଘର ଦ୍ୱାର ସବୁ ବନ୍ଧକ ହୋଇଗଲା । ତେତେବେଳେ ଉଭୟଙ୍କୁ ଆପଣା ଦେଶ ଛାଡ଼ି ଅନ୍ୟ ଦେଶକୁ ଯିବାକୁ ପଡ଼ିଲା । ମୋହନ ଲେଖିବା ପଢ଼ିବାରେ ପ୍ରବୀଣ ଥିଲା । ଅତଏବ ତାକୁ ଜଣେ ମହାଜନ ଆପଣା ଦୋକାନରେ ଗୁମାସ୍ତା କଲା । ଅଳ୍ପ ଦିନରେ ସେ ମହାଜନ ତାହାର ବୁଦ୍ଧି ଦେଖି ପ୍ରସନ୍ନ ହୋଇ ତାକୁ ଆପଣା ସୁଦ୍ଧା କଲା । ଏହି ପ୍ରକାରରେ ମୋହନ ଉତ୍ତମରୂପେ କବାହ ହେବାକୁ ଲାଗିଲା । ମାତ୍ର ଗୋପାଳ କିଛି ଲେଖି ପଢ଼ି ଅଥବା କୃତ୍ତି ଜାଣି ନ ଥିଲା; ଅତଏବ ତାକୁ ମୂଲିଆ କର୍ମ କରିବାକୁ ପଡ଼ିଲା । ଦିନଯାକ କଷ୍ଟରେ ପରିଶ୍ରମ କଲେ ସୁଦ୍ଧା ଯଥେଷ୍ଟ ଖାଇବାକୁ ମିଳିଲା ନାହିଁ । ସେ ସମୟରେ ସେ ପଶ୍ଚାତ୍ତାପ କରି କହିଲା, "ମୁଁ ପିତାଙ୍କ କଥା ମାନିଥିଲେ ମୋର ଏପରି ଦଶା ହୋଇ ନ ଥାନ୍ତା" ।

ବନାନ୍ ।

ସ୍ୱଚ୍ଛନ୍ଦ । ପାଣ୍ଠି । ଗୁମସ୍ତା । ପ୍ରସନ୍ନ । ପଶ୍ଚାତ୍ତାପ ।

ପ୍ରଶ୍ନ ।

୧—ଏକ ମହାଜନର କେତେ ପୁତ୍ର ଥିଲେ ?

୨—ସେମାନଙ୍କର ନାମ କ ?

୩—ପିତା ସେମାନଙ୍କୁ ନିତ୍ୟ କେଉଁ ଉପଦେଶ ଦେଉଥିଲେ ?

୪—କିଏ ପିତା କଥା ମାନିଲା ?

୫—ଗୋପାଳ କଣ ନିମନ୍ତେ ମାନିଲା ନାହିଁ ?

୬—ପଛେ ତାହାର କି ଦଶା ହେଲା ?

୭—ଯେ ମାନିଲା ତାହାର ବା କି ଦଶା ହେଲା ?

## ୨୮ ପାଠ ।

## ସ୍ୱଚ୍ଛତା ।

### ଅର୍ଥ ।

ବାଳକ—ପିଲା । ପ୍ରାତଃକାଳରୁ—ସକାଳରୁ । ପରିଷ୍କାର—ସଫା । ଗୁରୁ—ଶିକ୍ଷକ । ଅମାନ୍ୟ—ଅନାଦର । ସମ୍ମାନ—ଆଦର ।

ହେ ବାଳକମାନେ ! ପ୍ରାତଃକାଳରୁ ଉଠ ଏବଂ ହାତ ମୁହଁ ଧୋଇ ମୋଟା ହେଉ ବା ପତଳା ହେଉ ପରିଷ୍କାର ବସ୍ତ୍ର ପିନ୍ଧି ପଢ଼ି-ବାକୁ ଯାଅ । ସ୍ୱଚ୍ଛ ରହିବା ଅଧିକ ଭଲ । ଯେବେ କୌଣସି ବାଳକ ପରିଷ୍କାର ବସ୍ତ୍ର ପିନ୍ଧି ଗୁରୁ ମହାଶୟଙ୍କ ପାଖକୁ ଯାଏ ତେବେ ସେ ଆପଣା ପାଖରେ ଉତ୍ତମ ସ୍ଥାନରେ ତାକୁ ବସାନ୍ତି ଏବଂ ମନୋ-ଯୋଗପୂର୍ବକ ପଢାନ୍ତି । ମାତ୍ର ଯେଉଁ ବାଳକ ଅପରିଷ୍କାର ଥାନ୍ତି ସେମାନଙ୍କୁ କେହି ଆପଣା ନିକଟରେ ବସାନ୍ତି ନାହିଁ ଏବଂ ସବୁଠାରେ ସେମାନଙ୍କର ଅମାନ୍ୟ ହୁଏ । ଯେଉଁ ମନୁଷ୍ୟ ସ୍ୱଭାବରେ ପରିଷ୍କୃତ ତାକୁ ସମସ୍ତେ ସମ୍ମାନ କରନ୍ତି ଏବଂ ସେ ରୋଗରୁ ମଧ୍ୟ ରକ୍ଷା ପାଏ ।

### ବନାନ୍ ।

ସ୍ୱଚ୍ଛତା । ବସ୍ତ୍ର । ପିନ୍ଧି । ବସାନ୍ତି । ଉତ୍ତମ । ରକ୍ଷା ।

### ପ୍ରଶ୍ନ ।

୧—ସକାଳୁ ଉଠି କଣ କରିବା ଉଚିତ ?

୨—କେଉଁପରି ରହିବା ଭଲ ?

୩—କେଉଁପରି ହୋଇ ସ୍କୁଲକୁ ଗଲେ ଗୁରୁ ପାଖେ ବସାନ୍ତି ?

୪—କେଉଁପରି ପିଲାକୁ ପାଖକୁ ଯାଇ ଦିଅନ୍ତି ନାହିଁ ?

୫— କେଉଁପରି ପିଲାକୁ ସମସ୍ତେ ଆଦର କରନ୍ତି ?

୬—ସ୍ୱଚ୍ଛ ରହିଲେ କାହିଁରୁ ରକ୍ଷା ହୁଅନ୍ତି ?

## ୨୧ ପାଠ ।

## ପରିମିତ ବ୍ୟବହାର ।

### ଅର୍ଥ ।

ପରିମିତ ବ୍ୟବହାର—ଧାର୍ଯ୍ୟରେ ଚଳିବା ।

ଅତିକ୍ରମ—ବଳଘିବା । ପୀଡ଼ିତ—ରୋଗୀ । ପାନୀୟ—ପିଇବା-ଯୋଗ୍ୟ । ଅତିରିକ୍ତ—ଅଧିକ । ତୃପ୍ତ—ସନ୍ତୁଷ୍ଟ ।

ପରିମିତ ବ୍ୟବହାରର ଅଭିପ୍ରାୟ ଏହି ଯେ ସମସ୍ତବରେ ରହିବ ଅର୍ଥାତ୍ କୌଣସି ବିଷୟରେ ନିୟମର ଅତିକ୍ରମ ନ କରିବ । ପ୍ରତ୍ୟେକ ବ୍ୟକ୍ତି ଯାହା କରଇ ତଦ୍ବିଷୟରେ ପରିମିତାଚାରୀ ହେବାର ନିତାନ୍ତ ଆବଶ୍ୟକ । ଏବେ ତୁମ୍ଭଙ୍କୁ ପରିମିତ ଆହାର ବିଷୟରେ କୁହା ଯାଉଅଛି । ଅନେକ ଲୋକ ଅଧିକ ପରିମାଣରେ ଆହାର ଓ ପାନ କରିବାରୁ ପୀଡ଼ିତ ହୁଅନ୍ତି ।

ସେମାନେ ଖାଇବା ପଦାର୍ଥକୁ ଭଲ ନୁହେ ବୋଲି ନିନ୍ଦା କରନ୍ତି । ସେମାନେ ନିୟମାପେକ୍ଷା ଅଧିକ ଖାଇବା ହେତୁରୁ ଆପଣାକୁ ନିନ୍ଦା କରନ୍ତି ନାହିଁ । କେତେକ ବ୍ୟକ୍ତି ଜଳ କିମ୍ବା ଦୁଗ୍ଧ ପାନରେ ସନ୍ତୁଷ୍ଟ ନ ହୋଇ ଅନ୍ୟ କୌଣସି ପାନୀୟ ଦ୍ରବ୍ୟ ପିଇଲେ ଅଧିକ ସୁଖକର ହେବ ବୋଲି ଜ୍ଞାନ କରି ମଦ୍ୟ ପାନ କରନ୍ତି । ମଦ୍ୟ ଥରେ ଚାଖିଲେ ସେମାନଙ୍କର ତୃଷ୍ଣା ବଢ଼େ ଆଉ ସେମାନେ ଅଧିକ ପାନ କରିବାକୁ ଇଚ୍ଛା କରନ୍ତି । ଏହି ପ୍ରକାରରେ ଲୋକେ ମଦ୍ୟପୀ ହୁଅନ୍ତି । ମଦ୍ୟପୀ ବ୍ୟକ୍ତିକୁ ଦେଖିଲେ ମନରେ କରୁଣା ଓ ଦୁଃଖ ବୋଧ ହୁଏ । ଏହି-ରୂପେ ଲୋକେ ଖାଇବା ଓ ପିଇବାରେ ଅତିରିକ୍ତ ଇଚ୍ଛା କରିବାରୁ ମନ୍ଦ ଅଭ୍ୟାସରେ ପଡ଼ି ଆପଣାର ସ୍ୱାସ୍ଥ୍ୟ, ଜ୍ଞାନ ଓ ବଳ ନଷ୍ଟ କରନ୍ତି । ଆମ୍ଭେମାନେ ଆପଣା ସ୍ୱାସ୍ଥ୍ୟ, ଜ୍ଞାନ ଓ ବଳ ନଷ୍ଟ କରିବାକୁ ଇଚ୍ଛା କରୁ ନାହୁଁ । ଅତଏବ ଆମ୍ଭେମାନେ କେବଳ ଆମ୍ଭମାନଙ୍କ ଇଚ୍ଛା ଓ କ୍ଷୁଧା

ତୃପ୍ତ ହେବା ଭଳି ଉତ୍ତମ ଖାଦ୍ୟ ଖାଇବା ଆଉ ତୃଷା ନିବାରଣ ହେବା ଭଳି ଜଳ କିମ୍ବା ଦୁଗ୍ଧ ପିଇବା ।

ବନାନ୍ ।

ଉଦ୍ଦିଷ୍ଟ । ସନ୍ତୁଷ୍ଟ । ଦୁଗ୍ଧ । ତୃଷା । ସ୍ୱାସ୍ଥ୍ୟ । କ୍ଷୁଧା ।

ପ୍ରଶ୍ନ ।

୧—ପରିମିତ ବ୍ୟବହାର କାହାକୁ କହେ ?

୨—ଅଧିକ ଭକ୍ଷଣ ଓ ପାନ କଲେ କଣ ହୁଏ ?

୩—ଅଧିକ ସୁଖକର ବୋଲି ଲୋକେ କଣ ପିଅନ୍ତି ?

୪—ମଦ୍ୟ ଥରେ ପିଇଲେ କଣ ବଢ଼େ ?

୫—ମଦ୍ୟପୀ ବ୍ୟକ୍ତିକୁ ଦେଖିଲେ କପରି ବୋଧ ହୁଏ ?

୬—ଏଣୁ ଆମ୍ଭମାନଙ୍କ କପରି ଚଳିବା ଭଲ ?

---

୩୦ ପାଠ ।

ପବନ ।

ଅର୍ଥ ।

ଶ୍ୱାସ—ନିଶ୍ୱାସ । ସମ୍ପାଦନ—କରିବା । ଉଚ୍ଛ୍ୱାସ—ହାଲକା ।
ଘ୍ରାଣେନ୍ଦ୍ରିୟ—ନାକ । ସେବନ—ଭୋଗ । ବିଶୁଦ୍ଧ—ନିର୍ମଳ ।

ପବନ ଜୀବନର ମୂଳାଧାର । ଆମ୍ଭେମାନେ ପବନରେ ଶ୍ୱାସକ୍ରିୟା ସମ୍ପାଦନ କରୁଁ । ତାହା ନ କଲେ ଅବିଳମ୍ବରେ ମୃତ୍ୟୁଗ୍ରାସରେ ପଡ଼ିବାକୁ ହୁଅନ୍ତା । ଜଳ ବ୍ୟତିରେକେ ମନୁଷ୍ୟମାନେ ଓ ଅନ୍ୟାନ୍ୟ ଜନ୍ତୁମାନେ ଦୁଇ ଏକ ଦିନ ବାଞ୍ଚି ପାରନ୍ତି, ମାତ୍ର ପବନ ବିନା କ୍ଷଣେ ପ୍ରାଣ ଧାରଣ କରିବା ଅସମ୍ଭବ । ପବନ ପୃଥିବୀଯାକ ପୂରି ରହିଅଛି । ନିମ୍ନସ୍ଥ ପବନ କିଛି ଭାରୀ ଓ ଉପରସ୍ଥ ବାୟୁ କିଛି ଉଚ୍ଛ୍ୱାସ ହୁଏ । ଦୁର୍ଗନ୍ଧ ସୁଗନ୍ଧ ପବନରେ ମିଳିତ ହୋଇ ନାସିକାରେ ପ୍ରବିଷ୍ଟ ହେଲେ, ଆମ୍ଭେମାନେ ଘ୍ରାଣେନ୍ଦ୍ରିୟଦ୍ୱାରା ତାହା ଅନୁଭବ କରୁଁ । ପବନ ଗ

ଥିଲେ ଦୁର୍ଗନ୍ଧ କି ସୁଗନ୍ଧ କିଛିହେଁ ଆମ୍ଭମାନଙ୍କୁ ବୋଧ ହୁଅନ୍ତା ନାହିଁ । ଦୁର୍ଗନ୍ଧ ପବନ ସେବନରୁ ପୀଡ଼ା ଜନ୍ମେ । ଅତଏବ ଯେଉଁ ସ୍ଥାନରେ ଅବସ୍ଥିତ କରିବା ଉଚିତ ନୁହେ । ପବନରେ ବୃକ୍ଷ ଲତାଦି ଖାଦ୍ୟ ବଢ଼ନ୍ତି ଏବଂ ଗୃହ ମଣ୍ଡପ ଆଦି ପରିଷ୍କୃତ ହୁଏ । ସ୍ୱଚ୍ଛ ପବନ ବଡ଼ ଉପକାରୀ ପଦାର୍ଥ । ବିଶୁଦ୍ଧ ବାୟୁ ସେବନ କଲେ ଦେହ ସୁସ୍ଥ ରହେ ।

ବନାନ୍ ।

ପ୍ରଶ୍ୱାସ । ମୃତ୍ୟୁ । ପ୍ରବିଷ୍ଟ । ଦୁର୍ଗନ୍ଧ । ଜନ୍ମେ । ବସ୍ତୁତ ।

ପ୍ରଶ୍ନ ।

୧—ପ୍ରାଣ ବଞ୍ଚାଇବାର ମୂଳ କଅଣ ?

୨—ତଦ୍ଦ୍ୱାରା କେଉଁ କ୍ରିୟା ସମ୍ପାଦିତ ହୁଅଇ ?

୩—ସେହି କ୍ରିୟା ନ କଲେ ଜୀବଗଣର କି ଅବସ୍ଥା ପଡ଼ନ୍ତା ?

୪—କେଉଁ କଥା ନ ହେଲେ ପ୍ରାଣ ରହିବ ନାହିଁ ?

୫—ସୁଗନ୍ଧ ଦୁର୍ଗନ୍ଧ ନାସିକାକୁ କାହାଠାରୁ ମିଳଇ ?

୬—ଉପର ଓ ତଳ ପବନ ମଧ୍ୟରେ ପ୍ରଭେଦ କି ?

୭—କେଉଁ ପବନ ସେବନ କଲେ ପୀଡ଼ା ଜନ୍ମେ ? କେଉଁ ବାୟୁ ସେବନରେ ଶରୀର ସୁସ୍ଥ ହୁଏ ?

୮—ବାୟୁର ଗୁଣ କି ?

## ମାତା ପିତାଙ୍କ ପ୍ରତି ବ୍ୟବହାର ।

ପଦ୍ୟ ।

ଅର୍ଥ ।

ହିତକାରୀ—ଯେ ମଙ୍ଗଳ କରେ । ଭୁଞ୍ଜାଇବା—ଖୁଆଇବା । ଉଦର—ପେଟ । ଜୀବ—ପ୍ରାଣ । ତତ୍ପର—ପ୍ରବୃତ୍ତ । ଅବଜ୍ଞା—ହେୟଜ୍ଞାନ କରିବା ।

କହଇ ବାଳକେ ମନ ଦୃଢ଼ କରି ଶୁଣ ।
ହିତକାରୀ ନାହିଁ ପିତା ମାତାର ସମାନ । ୧ ।
ଅତି ଯେତେ ଘୋର ବନ୍ଧୁ ସୁଖ ସମୟରେ ।
ଆଦର କରନ୍ତି ନେଇ ରଖନ୍ତି ପାଶରେ । ୨ ।
କିନ୍ତୁ ଦେଖ ତାତ ମାତ ସୁଖ ଦୁଃଖ କାଳେ ।
ସ୍ନେହ ରଖିଛନ୍ତି ତୁମ୍ଭଠାରେ ସବୁବେଳେ । ୩ ।
ପ୍ରଥମେ ମାତାଙ୍କ ଗୁଣ ଦେଖ ଶିଶୁଗଣ ।
ଦଶ ମାସ ରଖିଥିଲେ ଉଦର ମଧ୍ୟେଣ । ୪ ।
ତହୁଁ ପୋଷି ବର୍ଷ ପାଞ୍ଚ ଦୁଗ୍ଧ ପାନ ଦେଇ ।
ତୁମ୍ଭଙ୍କୁ ଶୁଆଇ ସୁଖେ ଓଦା ସେଯେ ଶୋଇ । ୫ ।
ସୁଖେ ସୁଖୀ ଦୁଃଖେ ଦୁଃଖୀ କୁହାଇ ହୁଅନ୍ତି ।
କ୍ଷଣେ ନ ଦେଖିଲେ ପିତା ମାତା ବ୍ୟସ୍ତ ହୁଅନ୍ତି । ୬ ।
ଯେତେବେଳେ ସେବେ [illegible] ।
କଷ୍ଟ ହୋଇଥାନ୍ତା ତୁମ୍ଭ ଜୀବ ରଖିବାର । ୭ ।
ଏମନ୍ତ ଯେ ହିତକାରୀ ମାତା ପିତାଙ୍କର ।
ଉପକାର କର ଶିଶୁ ହୋଇ ତତପର । ୮ ।
ତାଙ୍କର ଆଜ୍ଞାକୁ କେବେ ଅବଜ୍ଞା ନ କର ।
ତୁମ୍ଭମାନେ ମାତିବ କର ପାଦ ତଳେ ପଡ଼ି । ୯ ।
ବୟଃପ୍ରାପ୍ତ ହେଲେ ମଧ୍ୟ ତାଙ୍କ ଗୁଣ ଯେବେ ।
ପାସୋରି ନିନ୍ଦା କରିବ ପାପୀ ହେବ ତେବେ । ୧୦ ।

---

## ୩୧ ପାଠ ।

### ଜଣେ ଅନ୍ଧ ଓ ଜଣେ ଲେଙ୍ଗଡାର କଥା ।

ଅର୍ଥ ।

ଦୁର୍ଗମ—ଗମନ କରିବାକୁ କଷ୍ଟ । ଅନାୟାସରେ—ସହଜରେ ।

ପ୍ରବେଶ—ଉପସ୍ଥିତ । ମଙ୍ଗଳ—କୁଶଳ । ସ୍ୱୟଂ—ନିଜେ ।

ବାଞ୍ଛିତ—ଇଚ୍ଛିତ ।

କୌଣସି ଅନ୍ଧବ୍ୟକ୍ତି ବାଟ ଭୁଲି ଏକ ଦୁର୍ଗମ ସ୍ଥାନରେ ଅସି ପ୍ରବେଶ ହେଲା । ସେଠାରେ ଜଣେ ଲେଙ୍ଗଡ଼ା ମନୁଷ୍ୟ ସଙ୍ଗରେ ଭେଟ ହେବାରୁ ସେ କହିଲା "ହେ ଭାଇ, ଏହି ଦୁର୍ଗମ ପଥରୁ ମୋତେ ପାର କରି ଦିଅ ।" ତାହା ଶୁଣି ଲେଙ୍ଗଡ଼ା ଉତ୍ତର ଦେଲା "ଭାଇ ମୁଁ ବଡ କଷ୍ଟରେ ଆସୁଅଛି । କିନ୍ତୁ ଗୋଟିଏ ଉପାୟ ଅଛି ତାହା ଏହି; ତୁମ୍ଭର ହସ୍ତପାଦ ଉତ୍ତମ ଅଛି । ଏଣୁ ଯଦି ତୁମ୍ଭେ ମୋତେ ନିଜ କାନ୍ଧରେ ବସାଇ ନେଲେ ମୁଁ ଅନାୟାସରେ ପଥ ଦେଖାଇ ପାରିବି । ଏଥିରେ ମୋର ଚକ୍ଷୁର ଉପକାର ତୁମ୍ଭଙ୍କୁ ଲାଭଜନକ ହେବ ଅଉ ତୁମ୍ଭର ହସ୍ତ ପାଦରୁ ମୋତେ ସୁଖ ଲାଭ ହେବ । ଏହି ଉପାୟ କଲେ ଦୁହେଁ ପାର ହୋଇ ଯିବା ।" ଏହା ଶୁଣି ଅନ୍ଧ କହିଲା "ତୁମ୍ଭେ ଉତ୍ତମ ବିଚାର କରଅଛ । ଏଥିରୁ ଉଭୟଙ୍କର ମଙ୍ଗଳ ହେବ । ଏହି ହେତୁରୁ ଆମ୍ଭେମାନେ ଏହି ଉପାୟ କରିବା ।" ଏହା କହି ଅନ୍ଧ ଲେଙ୍ଗଡ଼ାକୁ ଆପଣା କାନ୍ଧରେ ବସାଇବାରୁ ଲେଙ୍ଗଡ଼ା ପଥ ଦେଖାଇବାକୁ ଲାଗିଲା । ଏହିରୂପେ ଦୁହେଁ ସତ୍ୱର ବାଞ୍ଛିତ ସ୍ଥାନରେ କୁଶଳରେ ପହୁଞ୍ଚିଲେ ।

ଏହାର ତାତ୍ପର୍ଯ୍ୟ ଏହି—ସଂସାରରେ ସମସ୍ତେ ପରସ୍ପରକୁ ସାହାଯ୍ୟ କଲେ, ଅନେକ ବୃହତ୍ କାର୍ଯ୍ୟ ସିଦ୍ଧ ହୋଇ ପାରେ ।

ବନାନ୍ ।

ଲେଙ୍ଗଡ଼ା । ଅନ୍ଧ । ସ୍ୱୟଂ । ବାଞ୍ଛିତ । ସୁଖ । ସ୍ଥାନରେ ।

ପ୍ରଶ୍ନ ।

୧—କିଏ ଏକ ଦୁର୍ଗମ ସ୍ଥାନରେ ଅସି ପ୍ରବେଶ ହେଲା ?

୨—କାହା ସଙ୍ଗରେ ତାହାରି ଭେଟ ହେଲା ?

୩—ଅନ୍ଧ କଣ କହିଲା ?

୪—ତହିଁରେ ଲେଙ୍ଗଡ଼ା କି ଉପାୟ କରାଇଲା ?

୫—ତାହା ଶୁଣି ଅନ୍ଧ କି କହିଲା ?

୬—ସେ କାହାକୁ କାନ୍ଧରେ ବସାଇଲା ?

୭—ଏଥିର ତାତ୍ପର୍ଯ୍ୟ କି ?

## ୩୨ ପାଠ ।

## ରେଲ୍‌ଗାଡ଼ୀ ।

### ଅର୍ଥ ।

ସଂଯୋଗ—ଲଗାଇବା । ଲଙ୍ଘନ—ଅମାନ୍ୟ ।

ମୁଖ୍ୟ—ପ୍ରଧାନ । ବିଦ୍ୟମାନ—ପ୍ରକାଶ ।

ଆରୋହଣ—ଚଢ଼ିବା । ସମ୍ବାଦ—ଖବର ।

ରେଲଗାଡ଼ୀ ଚଳାଇବାରେ ଘୋଡ଼ା, ବଳଦ, ଓଟ ବା ଅନ୍ୟ କୌଣସି ପଶୁର ଆବଶ୍ୟକ ରହେ ନାହିଁ । ଏହା ବାଷ୍ପରେ ଚଳେ । ଅଧିକ ଶୀଘ୍ର ଚଳାଇବାକୁ ଇଚ୍ଛା କଲେ, ଏହା ଏକ ମିନଟରେ ଅର୍ଦ୍ଧ କୋଶ ପର୍ଯ୍ୟନ୍ତ ଯାଇପାରେ । ମାତ୍ର ଅତି ସତ୍ୱର ଚଳାଇଲେ ଏହା ଖସିଯାଇ ପାରେ ବା ରେଲ୍‌ପଥ ନଷ୍ଟ ହୋଇପାରେ । ଏହି ହେତୁରୁ ୨ ମିନଟରେ ୧ ମାଇଲ ଚଳାନ୍ତି । ପଥର କୋଇଲା, କାଠ, ପାଣି ଓ ଅଗ୍ନିର ସଂଯୋଗରେ ଯେଉଁ ବାଷ୍ପ ଉତ୍ପନ୍ନ ହୁଏ ରେଲ୍‌ଗାଡ଼ୀ ତହିଁର ବଳରେ ଚଳେ ।

କେତେବେଳେ ଏଞ୍ଜିନର ପଛରେ ୪୦ ବା ୫୦ ଚୋହାଇ ଗାଡ଼ୀ ଲଗା ଯାଇଥାଏ । ତଥାପି ଅଳ୍ପ ସମୟରେ ଏହା ସବୁ ଗାଡ଼ୀକୁ ଟାଣି ନେଇ ଅନ୍ୟ ସ୍ଥାନରେ ପ୍ରବେଶ ହୁଏ । ରେଲ୍ ସଡ଼କ ସମାନ ଥାଏ ଆଉ ଗାଡ଼ୀ ଲୌହରେଲ ଉପରେ ଚଳେ । ରେଲ୍‌ଗାଡ଼ୀ ଭୁଲିଯାଇ ଆଗକୁ ପଛକୁ ବାହାରି ଯାଇପାରେ । ଏଥିରେ ଛଅଗୋଟି ଚକ ଥାଏ । ପ୍ରତ୍ୟେ

ଚାଖଣ୍ଡ ଛନ୍ଦ୨ ତଳ ପରସ୍ପରରେ ଏପର ସମ୍ବନ୍ଧ ଥାଏ କି ଏକର ଶକ୍ତିରେ ସମୁଦାୟର ଗତି ନିର୍ଭର ରଖେ ।

ମୁଖ୍ୟ୨ ସ୍ଥାନରେ ଷ୍ଟେସନ୍ ପ୍ରସ୍ତୁତ ହୋଇଥାଏ । ସେଠାରେ ଲୋକମାନେ ଗାଡ଼ୀରେ ଆରୋହଣ କରନ୍ତି ଅବା ତହିଁରୁ ଓହ୍ଲାନ୍ତି ଅଉ ମାଲ୍ ମଧ୍ୟ ବୋଝାଇ କରନ୍ତି ବା ଉତ୍ତାରନ୍ତି । ଅନ୍ୟାନ୍ୟ ସବାରୁ ଏଥିର ଭଡ଼ା ଶସ୍ତା ଏବଂ କାର୍ଯ୍ୟ ଶୀଘ୍ର ହୁଏ । କୌଣସି ଋତୁରେ କିଛି କଷ୍ଟ ବୋଧ ହୁଏ ନାହିଁ । ଲୋକମାନେ ଇଞ୍ଜିନ ଆଉ ଯୋଡ଼ା ଯାଇଥିବା ଗାଡ଼ୀକୁ ଟ୍ରେନ କହନ୍ତି । ଟ୍ରେନ ଚଳିବା ସମୟରେ ସ୍ଥିର ନ ହେବା ପର୍ଯ୍ୟନ୍ତ କୌଣସି ଗାଡ଼ୀରେ ଚଢ଼ିବା ବା କୌଣସି ଗାଡ଼ୀରୁ ଓହ୍ଲାଇବା ଅନୁଚିତ । କାରଣ ଏହି ନିୟମ ଲଙ୍ଘନ କରିବାରେ ଅନେକ ଲୋକଙ୍କର ଅନେକ ଅପଦ ହୋଇଅଛି ।

ଯେଉଁ୨ ସ୍ଥାନରେ ରେଲଗାଡ଼ୀ ଚଳୁଅଛି ସେହି୨ ସ୍ଥାନରେ ତାର ଯନ୍ତ୍ର ମଧ୍ୟ ବିଦ୍ୟମାନ ଅଛି । ଏଥିରେ ଏତେ ଦୂରର ସମ୍ବାଦ ପଠା ଯାଇପାରେ କି ଯବଲପୁରରୁ ବମ୍ବାଇକୁ ୫ ମିନିଟରେ ପ୍ରଶ୍ନ ଯାଇ ତହିଁର ଉତ୍ତର ଆସିପାରେ । ପ୍ରସିଦ୍ଧ ଅଛି କି ମାନ୍ଦ୍ରାଜ ସୈନ୍ୟଦଳରେ କର୍ମ କରୁଥିବାର ଜଣେ ସାହେବ ଅନ୍ୟ ଏକ ସାହେବଙ୍କ ସାହାଯ୍ୟରେ ତାରଯନ୍ତ୍ର ପ୍ରସ୍ତୁତ କରନ୍ତି । ସରକାର ସେହି ଦୁଇ ଜଣଙ୍କୁ ପ୍ରାୟ ଛଅ ବା ଆଠ ଲକ୍ଷ ଟଙ୍କାର ପୁରସ୍କାର ଦେଲେ ।

ପ୍ରଶ୍ନ ।

୧—ରେଲଗାଡ଼ୀର ଗଢ଼ କି ପ୍ରକାର ?

୨—ଏହା କାହାର ସାହାଯ୍ୟରେ ଚଳେ ?

୩—ଏଥିରେ କେତେ ଗୋଟି ଗାଡ଼ୀ ଲଗା ଯାଇଥାଏ ?

୪—ଷ୍ଟେସନ କାହାକୁ କହନ୍ତି ? ସେଠାରେ କି୨ କାର୍ଯ୍ୟ ହୁଏ ?

୫—ଟ୍ରେନ କାହାକୁ କହନ୍ତି ?

୬—କି ପ୍ରକାର କରିବାରୁ ଲୋକଙ୍କୁ ଆପଦ ହୋଇଅଛି ?

୭—ବୁଡ଼ିବା ଲୋକଙ୍କୁ ଉଦ୍ଧାର କରିବା କର୍ତ୍ତବ୍ୟ ?

୮—ତାର ଏହାର ଉପକାର କି ?

୯—ଏହାଙ୍କୁ କିଏ ପ୍ରସ୍ତୁତ କଲେ ?

୧୦—ସରକାର ସେମାନଙ୍କୁ କିରୂପ ପୁରସ୍କାର ଦେଲେ ?

ବନାନ ।

ଅର୍ଥକୋଷ । ଦ୍ୱିତୀ । ସମ୍ଭ୍ରମ । ଉତ୍କ୍ରାନ୍ତ । ଟ୍ରେନ । ଶୀଘ୍ର । ପ୍ରସ୍ତୁତ ।

---

୩୩ ପାଠ ।

ଜର୍ଜ ଷ୍ଟିଫେନସନ ।

ଅର୍ଥ ।

ପ୍ରସ୍ତୁତକାରୀ—ନିର୍ମାଣକାରୀ । ଅଭିପ୍ରାୟ—ଇଚ୍ଛା ।

ପ୍ରତିବାସୀ—ପଡୋଶୀ । କୃତକାର୍ଯ୍ୟ—ସଫଳ ।

ଅଶିକ୍ଷିତ—ମୂର୍ଖ । ସମ୍ପ୍ରତି—ବର୍ତ୍ତମାନ ।

ଅର୍ଥସଂଗ୍ରହ—ଧନସଞ୍ଚୟ । କାର୍ଯ୍ୟୋପଯୋଗୀ—କାର୍ଯ୍ୟକାରକ ।

ପାଦଭ୍ରମଣ—ଚଳାବୁଲା ।

ରେଲ ଏଞ୍ଜିନ ପ୍ରସ୍ତୁତକାରୀ ଜର୍ଜ ଷ୍ଟିଫେନସନ ଜଣେ ନିର୍ଦ୍ଧନ ବ୍ୟକ୍ତିର ପୁତ୍ର ଥିଲେ । ତାହାଙ୍କ ପିତା ଇଂଲଣ୍ଡର ଉତ୍ତରଭାଗରେ ବାସ କରୁଥିଲେ । ତାହାଙ୍କ ଅଷ୍ଟମ ବର୍ଷ ବୟସ ସମୟରେ ସେ ଜଣେ ପ୍ରତିବାସିଙ୍କ ଗୋରୁ ରକ୍ଷା କରିବାରେ ନିଯୁକ୍ତ ଥିଲେ । ତାହାଙ୍କୁ କିଛି ଅଧିକ ବୟସ ହେଲାରୁ ସେ ପ୍ରତ୍ୟହ ୦ ୵ ବେତନ ପାଇ କୃଷି କର୍ମ କରୁଥିଲେ । ତତ୍ପରେ ସେ ଧୂଆଁକଳରେ ସପ୍ତାହକୁ ୦ ୬ ଙ୍କା ବେତନରେ ଖଣ୍ଡିଏ କର୍ମ ପାଇବାରୁ କହିବାକୁ ଲାଗିଲେ "ଅମ୍ଭେ ବର୍ତ୍ତମାନ ଜଣେ ମନୁଷ୍ୟ ହେଲୁଁ ।" ଏହା ପରେ ଦୁଇ ବର୍ଷ ଉତ୍ତାରୁ ତାହାଙ୍କୁ ଗୋଟିଏ ଧୂଆଁକଳର ଭାର ଦିଆଗଲା । ସେ ଉକ୍ତ କଳର ଖଣ୍ଡ

କର ସେ ସବୁ କିରୂପେ ନିର୍ମିତ ହୋଇଅଛି ତାହା ସବଧାନପୂର୍ବକ ଦେଖି ପୁଣି ସବୁ ଖଣ୍ଡକୁ ଯୋଡ଼ି ଦେଉଥାନ୍ତି ।

ତାହାଙ୍କୁ ୧୮ବର୍ଷ ବୟସ ନ ହେବା ପର୍ଯ୍ୟନ୍ତ ସେ ଅଶିକ୍ଷିତ ଥିଲେ। ସେ ପ୍ରତ୍ୟହ ୧୨ ଘଣ୍ଟା ପରିଶ୍ରମ କରି ଏକ ସାୟଂକାଳୀନ ବିଦ୍ୟାଳୟକୁ ଯାଇ ଲେଖାପଢ଼ା ଓ ଗଣିତ ଶିକ୍ଷା କରିବାକୁ ଲାଗିଲେ । ଯେତେବେଳେ ତାହାଙ୍କର କୌଣସି କାର୍ଯ୍ୟ ନ ଥାଏ ତେତେବେଳେ ସେ ଯୋତା ମରାମତି କରି ଅର୍ଥ ସଂଗ୍ରହ କରୁଥାନ୍ତି । ପ୍ରଚୁର ଅର୍ଥ ସଂଗ୍ରହ କଲା ପରେ ସେ ଜଣେ ସ୍ତ୍ରୀର ପାଣି ଗ୍ରହଣ କଲେ । ତାହାଙ୍କର ଗୋଟିଏ ପୁତ୍ର ହେଲା । ସେ ତାହାର ନାମ ରବର୍ଟ ଦେଲେ । ତାହାକୁ ଉତ୍ତମରୂପେ ବିଦ୍ୟାଶିକ୍ଷା ଦେବା ଅଭିପ୍ରାୟରେ ସେ ଦିନ ସମୟରେ ୧୨ଘଣ୍ଟା ପରିଶ୍ରମ କରି ରାତ୍ରିରେ ଘଡ଼ୀ ମରାମତି କରୁଥାନ୍ତି । କେତେକ ଲୋକ ଏକ ଜେବ ଘଡ଼ୀ ମରାମତି କରିବାକୁ ଚେଷ୍ଟା କଲେ ମାତ୍ର କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଏହି ଘଡ଼ୀ ମରାମତି କରି ଦେବାରୁ ତାହାଙ୍କ ଖ୍ୟାତି ବିସ୍ତାରିତ ହେବାକୁ ଲାଗିଲା । ତତ୍ପରେ ସେ ବାର୍ଷିକ ଟ ୧୦୦୦ ଙ୍କା ବେତନରେ ଏକ ବାରକମାଷ୍ଟରୀ କର୍ମରେ ନିଯୁକ୍ତ ହେଲେ । ଏସମୟରେ ଘୋଡ଼ାମାନେ ପଥର କୋଇଲା ଟାଣି ଆଣୁଥିଲେ । ସମ୍ପ୍ରତି ସେ ଏ ପ୍ରକାର ଏକ ଗମନାଗମନ କଳ ପ୍ରସ୍ତୁତ କଲେ ଯେ ତଦ୍ଦ୍ୱାରେ ପଥର କୋଇଲା ଟାଣିବା ସକାଶେ ଘୋଡ଼ାର ଆବଶ୍ୟକତା ରହିଲା ନାହିଁ । ୧୮୨୨ ସାଲରେ ସେ ୮ ମାଇଲର ଏକ ରେଲପଥ ପ୍ରସ୍ତୁତ କରିବାରୁ ବାର୍ଷିକ ଟ ୩୦୦୦ ଙ୍କା ବେତନରେ ଏକ ବୃହତ୍ ରେଲପଥର ବାରିକମାଷ୍ଟର ହେଲେ । ୩ ବର୍ଷ ପରେ ଏହି ପଥ ସର୍ବସାଧାରଣଙ୍କ କାର୍ଯ୍ୟୋପଯୋଗୀ ହେଲା । ଏଥିରେ ୩୮ ଗୋଟି ଗାଡ଼ୀ ସଂଲଗ୍ନ କରି ଯାଉଥିଲେହେଁ ୧ ଘଣ୍ଟାକୁ ୧୨ ମାଇଲ ହିସାବରେ ଏହା ଗମନ କରୁଥିଲା । ତତ୍ପରେ ସେ ମେଞ୍ଚେଷ୍ଟର ଓ ଲିଭରପୁଲ ନାମକ...

ଦୁଇ ନଗର ମଧ୍ୟରେ ରେଲପଥ ପ୍ରସ୍ତୁତ କରିବା ସକାଶେ ୧୦୦୦୦ଙ୍କା ବାର୍ଷିକ ବେତନରେ ବାରକମାଷ୍ଟର କର୍ମ କରିବାକୁ ଲାଗିଲେ । ଏହି ପଥରେ ରେଲ ୧ ଘଣ୍ଟାକୁ ୨୪ ମାଇଲ ଗତିରେ ଗମନ କରିବାକୁ ଲାଗିଲା । ୨ ବର୍ଷ ମଧ୍ୟରେ ୧୧ କୋଟି ଟଙ୍କାରେ ୩୨୦ ମାଇଲ ରେଲପଥ ଅନ୍ୟାନ୍ୟ ସ୍ଥଳରେ ପ୍ରସ୍ତୁତ ହେବାକୁ ଲାଗିଲା ।

ବର୍ତ୍ତମାନ ଷ୍ଟିଫେନ୍‌ସନ୍ ଅତ୍ୟନ୍ତ ଧନାଢ୍ୟ ଓ ଖ୍ୟାତିମନ୍ତ ହୋଇ ଉଠିଲେ ମାତ୍ର ଏରୂପ ହେଲେହେଁ ସେ ଅତି ସାମାନ୍ୟ ଭାବରେ ରହି କହିଁକୁ ହେଁ ଅଭିମାନ କରୁ ନ ଥିଲେ । ଏହି ମହାପୁରୁଷଙ୍କ ବୁଦ୍ଧିରୁ ପ୍ରାଣୀବର୍ଗଙ୍କୁ ଯେ କେତେ ଦୂର ଉପକାର ହେଉଅଛି ତାହା ବର୍ଣ୍ଣନା କରା ଯାଇ ନ ପାରେ ।

ଏଥିର ତାତ୍ପର୍ଯ୍ୟ ଏହି—ଅତି ସାମାନ୍ୟ ବ୍ୟକ୍ତିକୁ ସୁଦ୍ଧା ଘୃଣା କରିବା ଉଚିତ ନୁହେଁ । କାରଣ ସେ ମଧ୍ୟ ମହାନ୍ କାର୍ଯ୍ୟ କରିପାରେ ।

ପ୍ରଶ୍ନ ।

୧—ଷ୍ଟିଫେନ୍‌ସନ୍ କାହାର ପୁତ୍ର ଥିଲେ ?

୨—ଅଷ୍ଟମ ବର୍ଷ ବୟସରେ କି କାର୍ଯ୍ୟ କରୁଥିଲେ ?

୩—କିଛି ଅଧିକ ବର୍ଷ ହେବାରୁ ସେ କି କାର୍ଯ୍ୟ କଲେ ?

୪—ସେ ୭ ଟଙ୍କା ବେତନ ପାଇବା ସମୟରେ କି କହିବାକୁ ଲାଗିଲେ ?

୫—ସେ କେତେ ବର୍ଷ ବୟସରେ ଶିକ୍ଷା କଲେ ?

୬—ତାହାଙ୍କ ପୁତ୍ରକୁ ଉତ୍ତମରୂପେ ବିଦ୍ୟା ଶିକ୍ଷା ଦେବା ପାଇଁ ସେ କି ଉପାୟ କଲେ ?

୭—କିରୂପେ ତାଙ୍କ ଖ୍ୟାତି ବିସ୍ତାରିତ ହେଲା ?

୮—ଉକ୍ତ ଖ୍ୟାତିରୁ ତାହାଙ୍କୁ କି ଲାଭ ହେଲା ?

୯—କିଣ କରିବାରୁ ସେ ଏକ ବୃହତ୍ ରେଲପଥର ବାରକ-ମାଷ୍ଟର ହୋଇଲେ ?

୧୦—ଶେଷରେ ତାହାଙ୍କ ବାର୍ଷିକ ବେତନ କେତେ ହୋଇବାରୁ ଲାଗିଲା ?

୧୧—ସେ କିଣ କଷ୍ଟ ନ ଥିଲେ ?

୧୨—ଏହି ଗଳ୍ପର ତାତ୍ପର୍ଯ୍ୟ କି ?

ବନାନ୍ ।

କୃଷିକର୍ମ । ଅଶିକ୍ଷିତ । ବାର୍ଷିକ । ସଂଲଗ୍ନ । ଧନାଢ୍ୟ । କର୍ତ୍ତବ୍ୟାନ୍ତ ।

---

୬୪.ପାଠ ।

କୃତଜ୍ଞତାର କଥା ।

ଅର୍ଥ ।

ଦୁର୍ଭିକ୍ଷ—ଅକାଳ । ଧନାଢ୍ୟ—ଧନବାନ୍ । ନିର୍ଦ୍ଧନୀ—ଦରିଦ୍ର । ପତିତ—ପଡ଼ିବା । ଦଣ୍ଡାୟମାନ—ଠିଆ ହୋଇବା ।

ଅସ୍ୱାର୍ଥପର—ନିର୍ଲୋଭୀ ।

କୌଣସି ଦେଶରେ ମହାନ୍ ଦୁର୍ଭିକ୍ଷ ହୋଇବାରୁ ଅନେକ ଲୋକ ଖାଦ୍ୟ ଅଭାବରେ ବିଶେଷ କଷ୍ଟ ପାଉଥିଲେ । ଜଣେ ଧନବାନ୍ ବ୍ୟକ୍ତି ୨୦ ଜଣ ନିର୍ଦ୍ଧନୀ ବାଳକଙ୍କୁ ଭୋଜନ ଦେବା ସକାଶେ ଆପଣା ଗୃହକୁ ଡକାଇଲା । ସେମାନେ ପ୍ରବେଶ ହୋଇଲା ଉତ୍ତାରୁ ସେ ସେମାନଙ୍କୁ କହିଲା "ଏହି ଟୋପାରେ ୨୦ ଗୋଟି ରୁଟି ଅଛି । ତୁମ୍ଭେମାନେ ପ୍ରତ୍ୟେକେ ଏକ୨ ଗୋଟି ନିଅ ଆଉ ଅକାଳ ସମୟ ନ ଯିବା ପର୍ଯ୍ୟନ୍ତ ପ୍ରତ୍ୟହ ଏହି ସମୟରେ ଆମ୍ଭ ଗୃହକୁ ରୁଟି ନେବା ପାଇଁ ଆସୁଥିବ ।" ଏହା ଶୁଣି ବାଳକମାନେ ଟୋପାକୁ ଝିଙ୍କି ପ୍ରତ୍ୟେକେ ସବାଠାରୁ ଉତ୍ତମ ଓ ବୃହତ୍ ରୁଟି ନେବା ପାଇଁ କଳହ ଓ ମାରପିଟ କରିବାକୁ ଲାଗିଲେ ।

ପରିଶେଷରେ ଧନବାନ୍ ବ୍ୟକ୍ତିଙ୍କୁ ଧନ୍ୟବାଦ ପର୍ଯ୍ୟନ୍ତ ନ ଦେଇ ସମସ୍ତେ ଆପଣା ଗୃହକୁ ଗଲିଗଲେ ।

ସେମାନଙ୍କ ମଧ୍ୟରେ ଲକ୍ଷ୍ମୀ ନାମରେ ଜଣେ ବାଳିକା ଥିଲା । ସେ ପରିଷ୍କାରରୂପେ ବସ୍ତ୍ର ପରିଧାନ କରି ଦୂରରେ ଦଣ୍ଡାୟମାନ ହୋଇଥିଲା । ବାଳକମାନେ ରୁଟି ନେଲା ପରେ ସେ ସର୍ବାପେକ୍ଷା କ୍ଷୁଦ୍ର ରୁଟିଟିକୁ ଧରି ଓ ଧନାଢ୍ୟ ବ୍ୟକ୍ତିଙ୍କୁ ଧନ୍ୟବାଦ ଦେଇ ଧୀରେ ୨ ଗୃହକୁ ବାହାରି ଗଲା ।

ଅନ୍ୟଦିନ ଛାତ୍ରମାନେ ଆପେ ପୂର୍ବପରି କଳହ ଓ ବିବାଦ କରି ରୁଟି ଧରି ଆପଣ ୨ ଗୃହକୁ ଗଲିଗଲେ । ଏହି ଦିନ ଲକ୍ଷ୍ମୀ ଏରୂପ ଗୋଟିଏ କ୍ଷୁଦ୍ର ରୁଟି ପାଇଲା ଯେ ତାହା ଅନ୍ୟାନ୍ୟ ରୁଟିର ଅର୍ଦ୍ଧେକ ଥିଲା । ମାତ୍ର ଯେତେବେଳେ ସେ ରୁଟି ଧରି ଗୃହକୁ ଗଲା ତାହାର ମାତା ରୁଟି କାଟିବା ସମୟରେ ତହିଁରୁ ଛଅ ସ୍ୱର୍ଣ୍ଣମୁଦ୍ରା ପତିତ ହେବାର ଦେଖି ଆଶ୍ଚର୍ଯ୍ୟ ବୋଧ କରି ନିଜ ବାଳିକାକୁ କହିଲେ "ଶୀଘ୍ର ଏହି ମୁଦ୍ରା ଧନୀବ୍ୟକ୍ତିଙ୍କ ଗୃହକୁ ନେଇ ଦିଅ, କାରଣ ଏହା ରୁଟିମଧ୍ୟକୁ ଭ୍ରମରେ ଆସିଅଛି । ତାହା ଶୁଣି ସେହି ବାଳିକା ଟଙ୍କା ଦେବନ ଧନୀ ମନୁଷ୍ୟର ଗୃହକୁ ଗଲା ଏବଂ ଟଙ୍କା ଦେବା ସମୟରେ ଧନୀ ବ୍ୟକ୍ତି କହିଲେ "ହେ ବାଳିକା ! ଏହା ଭ୍ରମ ନୁହେ । ତୁମ୍ଭେ ପାଇବ ବୋଲି ଆମ୍ଭେ ରୁଟି ମଧ୍ୟରେ ଟଙ୍କା ଦେଇଥିଲୁଁ । ତୁମ୍ଭେ ଉତ୍ତମ ଆଚରଣ ଓ କୃତଜ୍ଞତା ପ୍ରକାଶ କରିବା ହେତୁରୁ ପୁରସ୍କାରସ୍ୱରୂପରେ ନିଅ ।"

ହେ ବାଳକ ଓ ବାଳିକାମାନେ ! ଲକ୍ଷ୍ମୀ ପରି ସର୍ବଦା ନମ୍ର ଓ ଅସ୍ୱାର୍ଥପର ହେବାକୁ ଚେଷ୍ଟା କର ।

ପ୍ରଶ୍ନ ।

୧—ଦୁର୍ଭିକ୍ଷ ହେବାରୁ ଜଣେ ଧନୀ ଲୋକ କ କଲା ?

୨—ବାଳକମାନେ ଚୋପା ଧରି କରୂପ କାର୍ଯ୍ୟ କରିବାକୁ ଲାଗିଲେ ?

୩—ଲକ୍ଷ୍ମୀ କିପରି ବାଳିକା ଥିଲା ?

୪—ସେ ବୃତ୍ତି ପାଇ କଣ କଲା ?

୫—ଅନ୍ୟଦିନ ସେ କାହାର ବୃତ୍ତି ପାଇଲା ?

୬—ତାହାର ମାତା ବୃତ୍ତି କାଟିବା ସମୟରେ ତାହାଁରୁ କଣ ତଦଳ ପଚାରିଲା ?

୭—ତାହାର ମାତା ତାହାଙ୍କୁ କଣ କହିଲେ ?

୮—ଧନୀ ବଣିକ ଲକ୍ଷ୍ମୀକି କ କହିଲେ ?

୯—ବାଳକ ଓ ବାଳିକାମାନଙ୍କୁ କିରୂପ ହେବା ଉଚିତ ?

ବନାନ ।

ଦୁର୍ଭିକ୍ଷ । ବିଶେଷ । ଲକ୍ଷ୍ମୀ । ଅପେକ୍ଷା । ସ୍ୱର୍ଣ୍ଣମୁଦ୍ରା । ଅସ୍ୱାର୍ଥ ।

---

## ଦୀର୍ଘସୂତ୍ର ନ କର ।

### ଅର୍ଥ ।

ଦୀର୍ଘସୂତ୍ର କରିବା—ବିଳମ୍ବ କରିବା । ଉକ୍ତି—କଥା । ମତି—ବୁଦ୍ଧି । ସ୍ୱରିତ—ଶୀଘ୍ର । ବାଞ୍ଛା—ଇଚ୍ଛା । ବିଦୂଷ—ହସି-ଦେବା । ବନ୍ଦନ—ଶୀଘ୍ର । ଅନୁକୂଳ—ସହାୟ ।

କର୍ତ୍ତବ୍ୟ ଯେବେ କିଛି ଥିବ ତୁମ୍ଭର ।
ସ୍ୱରିତମତିରେ ତାହା କର ସତ୍ୱର ଯେ । ୧ ।
ଅନ୍ୟେ ସାଧିତ ହେଉ ବାଞ୍ଛା ଏଥନ ।
ନ କର ଅପେ ତାହା କର ବନ୍ଦନା ଯେ । ୨ ।
ଧୀରେ ଅଳପେ କଲେ ଭଲ ହୁଅଇ ।
ଏ ଉକ୍ତି ଆଳସ୍ୟର ସତ୍ୟ ନୁହଇ ଯେ । ୩ ।
କଳ୍ପିତ ଅଟେ ବର୍ତ୍ତମାନ ଶକତି ।
ତେଣୁ କରବ କାର୍ଯ୍ୟ ସିଦ୍ଧ ସ୍ୱରିତି ଯେ । ୪ ।